ଶିକ୍ଷା ଓ ସାମ୍ପ୍ରତିକ ସମାଜ
ବାଳକୃଷ୍ଣ କର
ପ୍ରକାଶକ :
ବାଳକୃଷ୍ଣ କର
'ଆଶିଆନା',
ପଣ୍ଡିତ ଲକ୍ଷ୍ମୀନାରାୟଣ ଲେନ୍
ସମ୍ବଲପୁର
ପ୍ରଚ୍ଛଦ :
ଦିଲ୍ଲୀପ କୁମାର ପାଢ଼ୀ,
ମୁଦିପଡ଼ା, ସମ୍ବଲପୁର
ଡ଼ି.ଟି.ପି. :
ଅଙ୍କିତ କମ୍ପ୍ୟୁଟର୍ସ ଏଣ୍ଡ ଗ୍ରାଫିକ୍ସ
ନନ୍ଦପଡ଼ା, ସମ୍ବଲପୁର
ମୁଦ୍ରଣ :
ଇମ୍ପ୍ରେସନ୍ସ, ସାନସଡ଼କ
ସମ୍ବଲପୁର
ପ୍ରଥମ ପ୍ରକାଶ :
ଅଗଷ୍ଟ, ୨୦୦୪
ମୂଲ୍ୟ :
ଟ. ୬୦/-
(ଷାଠିଏ ଟଙ୍କା ମାତ୍ର)

**Siksha O Sampratika Samaja (Oriya)**
Balakrushna Kar
**Published By :**
Balakrushna Kar
'Ashiana', Pandit Laxminarayan Lane
Sambalpur - 768001
**Cover :**
Dilip Kumar Padhi,
Modipara, Sambalpur
**D.T.P. :**
Ankit Computers & Graphics
Nandapara, Sambalpur
**Printed at :**
Impressions,
Sansarak, Sambalpur
**First Edition :**
August, 2004
**Price :** Rs. 60/- (Sixty Rupees) Only

ISBN 81-900901-0-0



ରାଜ୍ୟ ସରକାରଙ୍କ ପୁରସ୍କାରପ୍ରାପ୍ତ କୃତୀ ଶିକ୍ଷକ, ଭାରତର
ସ୍ୱାଧୀନତା ଆନ୍ଦୋଳନ ତଥା ଗଡ଼ଜାତ ଆନ୍ଦୋଳନର ନିର୍ଭୀକ
ସୈନିକ, ସାମ୍ୟବାଦୀ ଆନ୍ଦୋଳନର ଅଗ୍ରଧ୍ୱଜାଧାରୀ ମୋର ପୂଜ୍ୟ
ମାମୁଁ **ସ୍ୱର୍ଗତ ଦୟାନନ୍ଦ ଶତପଥୀଙ୍କ** ଅମ୍ଲାନ ସ୍ମୃତି
ଉଦ୍ଦେଶ୍ୟରେ ଏ ପୁସ୍ତକ ଉତ୍ସର୍ଗ କଲି ।

**ବାଳକୃଷ୍ଣ**

# ମୁଖବନ୍ଧ

ଶ୍ରୀଯୁକ୍ତ ବାଳକୃଷ୍ଣ କର, ସମ୍ବଲପୁର ସହରର କାହିଁକି ଓଡ଼ିଶାର ଜଣେ ଖ୍ୟାତିସଂପନ୍ନ ଶିକ୍ଷକ । ଛାତ୍ରାବସ୍ଥାରୁ ସେ ଜଣେ ଦୀପ୍ତିମାନ ଆଦର୍ଶ ଯୁବକ ଭାବରେ ସୁଖ୍ୟାତି ଅର୍ଜନ କରିଥିଲେ । ଚାକିରି କାର୍ଯ୍ୟକାଳ ମଧ୍ୟରେ ଆଦର୍ଶ ଓ ପ୍ରବୀଣ ଶିକ୍ଷକ ରୂପେ ଖୁବ୍ ପ୍ରଶଂସାର ସହ କାର୍ଯ୍ୟକରି ଅଛନ୍ତି । ଅବସର ନେବାପରେ ମଧ୍ୟ ଶିକ୍ଷାର ପ୍ରସାର ଓ ସାମାଜିକ ସେବା କାର୍ଯ୍ୟମାନଙ୍କରେ ସେ ସକ୍ରିୟ ସହଯୋଗ କରି ଆସୁଛନ୍ତି । ଇଂରାଜୀ, ସଂସ୍କୃତ ଓ ଓଡ଼ିଆ ଭାଷା ଓ ସାହିତ୍ୟରେ ତାଙ୍କର ଗଭୀର ପ୍ରବେଶ ଥିବାରୁ ତାଙ୍କ ଲେଖାଗୁଡ଼ିକ ଉଚ୍ଚକୋଟିର ହୋଇ ପାରିଛି । ତାଙ୍କ ପରି ଜଣେ ସୁଶୃଙ୍ଖଳ, ଦକ୍ଷ, ଜ୍ଞାନୀ ଓ ସମାଜସେବକ ବିରଳ । ବର୍ତ୍ତମାନ ମଧ୍ୟ ୭୩ ବର୍ଷ ବୟସରେ ପ୍ରତ୍ୟହ ପ୍ରାତଃଭ୍ରମଣ, ଅଧ୍ୟୟନ ଓ ସାଧନା ଇତ୍ୟାଦିରେ କାର୍ଯ୍ୟରତ । ସେ ବିଭିନ୍ନ ଆଲୋଚନା ଚକ୍ର ବା ବିଶେଷଭାବେ ଆୟୋଜିତ ସଭା ସମିତିରେ ଯୋଗଦାନ କରି ସମସ୍ତଙ୍କ ମଧ୍ୟରେ ଉତ୍ସାହ ଜାଗ୍ରତ କରୁଛନ୍ତି । ପଠନ ଓ ଆଲୋଚନା ମାଧ୍ୟମରେ ଶିକ୍ଷକ-ଜୀବନ ସାରା ଯେଉଁ ମାର୍ଗର ଅନୁସନ୍ଧାନରେ ଲାଗି ପଡ଼ିଥିଲେ ଅବସର ପରେ ମଧ୍ୟ ସେ କୃତସଂକଳ୍ପ ହୋଇ ଜୀବନର ଅବଶିଷ୍ଟ ସମୟ ଶିକ୍ଷାର ଗୁଣାତ୍ମକ ପ୍ରସାର ଓ ସମାଜସେବା କାର୍ଯ୍ୟକ୍ରମ ଗୁଡ଼ିକରେ ଓତପ୍ରୋତ ଭାବେ ନିଜକୁ ଜଡ଼ିତ କରିଛନ୍ତି ।

ତାଙ୍କର ଶିକ୍ଷାପ୍ରତି ସମର୍ପିତ ମନୋଭାବ ଥିବାରୁ ଅବସରକାଳୀନ ଜୀବନରେ ଶିକ୍ଷା ଓ ସମାଜ ସଂସ୍କାର ଉପରେ ଯେଉଁ ପ୍ରବନ୍ଧ ଲେଖି ପ୍ରକାଶ କରୁଛନ୍ତି ସେ ସବୁ ଅତୀବ ଉପାଦେୟ ହୋଇଥିବାରୁ ପ୍ରକାଶନ ପାଇଁ ମୋ ପରାମର୍ଶ ଗ୍ରହଣ କରି କାର୍ଯ୍ୟକାରୀ କରିଥିବାରୁ ମୁଁ ବିଶେଷ ଆନନ୍ଦିତ ।

ଗୀତା, ବେଦାନ୍ତ ଓ ଉପନିଷଦ ତାଙ୍କ ଜୀବନଦର୍ଶନର ମୂଳ ଭିତ୍ତିଭୂମି ହୋଇଥିବାରୁ ସେ ନିର୍ଭୀକ ଭାବରେ ଜୀବନ ଯାପନ କରିବା ସହିତ ନ୍ୟାୟ ଓ ସତ୍ୟର ପ୍ରତିଷ୍ଠା ପାଇଁ ଅନ୍ୟାୟ ଓ ଅନୀତି ବିରୁଦ୍ଧରେ ସାହସିକତା ସହ ସମ୍ମୁଖୀନ ହେବାପାଇଁ ଲେଖା ମାଧ୍ୟମରେ ସମସ୍ତଙ୍କୁ ଉତ୍ସାହ ପ୍ରଦାନ କରୁଛନ୍ତି । ତାଙ୍କର ଶିକ୍ଷା ଓ ସମାଜ ଉପରେ ଲିଖିତ ପ୍ରବନ୍ଧ ଗୁଡ଼ିକ ପାଠକଲେ ପାଠକ ନିଶ୍ଚୟ ଜାଣିପାରିବେ ଯେ ବାଳକୃଷ୍ଣ କରଙ୍କ ଅବସରକାଳୀନ ସମୟଟି ପରିପୂର୍ଣ୍ଣତାର ଜୀବନ ଏବଂ ସେ ଜରାବସ୍ଥାର ଆଗମନକୁ ଆଶ୍ଚର୍ଯ୍ୟଭାବେ ପ୍ରତିରୋଧ କରୁଛନ୍ତି । ଶ୍ରୀ ବାଳକୃଷ୍ଣ କରଙ୍କ ଅସାଧାରଣ ବ୍ୟକ୍ତିତ୍ୱ ଓ ବିଦ୍‌ବତ୍ତା ଯୋଗୁଁ ତାଙ୍କର ସମ୍ବଲପୁରର ପ୍ରତିଷ୍ଠିତ ଲୋକମାନଙ୍କ ସହ ସୁସଂପର୍କ ସ୍ଥାପନ ହୋଇ ପାରିଛି । ସେ ଜଣେ ପ୍ରତିଶ୍ରୁତିବଦ୍ଧ ତଥା ସମାଜ ସଂସ୍କାରକ, ଏହି ଚିନ୍ତାଧାରା ତାଙ୍କର ପ୍ରବନ୍ଧ ଗୁଡ଼ିକରେ ପ୍ରତିଫଳିତ । ସଂଗଠନ, ସଦ୍‌ଭାବ, ସାକ୍ଷରତା, ଗୁଣାତ୍ମକ ଶିକ୍ଷାର ପ୍ରସାର ଓ ପ୍ରଚାରରେ ସେ ହେଉଛନ୍ତି ଚଳନ୍ତି ପାଠାଗାର । ଶିକ୍ଷାକ୍ଷେତ୍ରରେ

ତାଙ୍କର ମୌଳିକ ଚିନ୍ତା ଦେଶର ନୈତିକ ଜୀବନର ଅବକ୍ଷୟକୁ ରୋକିବା ପାଇଁ ମୂଲ୍ୟବୋଧ ଶିକ୍ଷା ଉପରେ ସେ ପ୍ରାଧାନ୍ୟ ଦେଇଛନ୍ତି । ଏତଦ୍‌ବ୍ୟତୀତ, ଗଣତନ୍ତ୍ରର ସୁରକ୍ଷା ଓ ଏକ ଗଣତାନ୍ତ୍ରିକ ସମାଜ ଗଢ଼ିବା ପାଇଁ ଶିକ୍ଷାର ଆଭିମୁଖ୍ୟ ପରିବର୍ତ୍ତନ ଉପରେ ଶ୍ରୀ କର ଗୁରୁତ୍ୱ ଆରୋପ କରିଛନ୍ତି । ଦେଶରେ ଇଂରାଜୀ ଭାଷାର ପ୍ରଚଳନ ନେଇ ଚାଲିଥିବା ବାଦାନୁବାଦ ଉପରେ ସେ ସ୍ପଷ୍ଟ ଯୁକ୍ତି ବାଢ଼ିଛନ୍ତି ଯେ ଯେଉଁ ଭାଷା ମଣିଷର ଜୀବନ ଧାରଣ ପାଇଁ ସହାୟକ, ସେ ଭାଷା ଆଦୃତ ହେବା ସ୍ୱାଭାବିକ ।

ଶ୍ରୀ କର ଯେପରି ଅମାୟିକ ଓ ସ୍ନେହୀ, ସେ ଭଳି କଠୋର ଓ ଶୃଙ୍ଖଳା ପ୍ରୟୋଗରେ ଦୃଢ଼ମନା । ତାଙ୍କର ଏହି ଗୁଣାବଳୀ ଯୋଗୁଁ ସେ ଲୋକପ୍ରିୟ ତଥା ଭକ୍ତି ଓ ଶ୍ରଦ୍ଧାର ପାତ୍ର ହୋଇ ପାରିଛନ୍ତି । ଶିକ୍ଷା ଉପରେ ତାଙ୍କର ସ୍ୱତନ୍ତ୍ର ଦୃଷ୍ଟିଭଙ୍ଗୀ ପାଠକେ ପୁସ୍ତିକାରୁ ପାଇପାରିବେ । ଶିକ୍ଷାକର୍ମୀଙ୍କୁ କିପରି ଅନୁପ୍ରାଣିତ କରିବା ଆବଶ୍ୟକ, ପୁସ୍ତକରେ ତାର ଦୃଷ୍ଟାନ୍ତ ଦିଆଯାଇଛି । ଶିକ୍ଷା କିପରି କର୍ମ-ଭିତ୍ତିକ ହୋଇ ଶିକ୍ଷାର୍ଥୀକୁ ସ୍ୱାବଲମ୍ବୀ କରିବା ସହ ତାକୁ ମର୍ଯ୍ୟାଦା ପ୍ରଦାନ କରି ପାରିବ ବାଳକୃଷ୍ଣ ବାବୁ ତାହା ପୁସ୍ତିକାରେ ବିଶ୍ଳେଷଣ କରିଛନ୍ତି । ପ୍ରବନ୍ଧ ଗୁଡ଼ିକରେ ଶିକ୍ଷାକ୍ଷେତ୍ର ଓ ସମାଜକୁ ଦିଗ୍‌ଦର୍ଶନର ଭୂମିକା ସ୍ୱାଗତଯୋଗ୍ୟ ଓ ଗ୍ରହଣୀୟ । ଏହି ପୁସ୍ତିକା ଶିକ୍ଷକ, ଅଧ୍ୟାପକ, ଛାତ୍ର ତଥା ଶିକ୍ଷାବିତ୍‌ମାନଙ୍କ ଦ୍ୱାରା ବିଶେଷଭାବେ ଆଦୃତ ହେବ ବୋଲି ଆଶା କରାଯାଏ ।

ଆଦିତ୍ୟ ପ୍ରସାଦ ପାଢ଼ୀ

(ଆଦିତ୍ୟ ପ୍ରସାଦ ପାଢ଼ୀ)
ପୂର୍ବତନ କୁଳପତି
ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ

# ପ୍ରସ୍ତାବନା.........

ଶିକ୍ଷା ବିଭାଗରେ ଦୀର୍ଘ ୩୬ ବର୍ଷ ଧରି ମାଧମିକ ବିଦ୍ୟାଳୟର ସହକାରୀ ଓ ପ୍ରଧାନ ଶିକ୍ଷକ ତଥା ପ୍ରଶାସନିକ ସ୍ତରରେ ପ୍ରାଥମିକ ଓ ମାଧମିକ ବିଦ୍ୟାଳୟ ଗୁଡ଼ିକର ପରିଦର୍ଶକ ରୂପେ କାର୍ଯ୍ୟ କରିବା ଫଳରେ ଶିକ୍ଷାଦାନ ସମ୍ବନ୍ଧୀୟ ଅଭିଜ୍ଞତା ଅର୍ଜନ କରିବା ସହ ଶିକ୍ଷାର ପ୍ରଗତି ପାଇଁ ସୃଷ୍ଟି ହେଉଥିବା ପ୍ରତିବନ୍ଧକ ଗୁଡ଼ିକର ସମ୍ମୁଖୀନ ହୋଇଛି ଏବଂ ସେ ଗୁଡ଼ିକର ନିରାକରଣ ପାଇଁ ଯଥାସାଧ୍ୟ ଉଦ୍ୟମ କରିଛି । ସୁଦୂର ପଲ୍ଲୀବାସୀ, ହରିଜନ, ଗିରିଜନ ତଥା ଦରିଦ୍ର ଜନସାଧାରଣ ସମ୍ମୁଖୀନ ହେଉଥିବା ଶିକ୍ଷା ସମସ୍ୟା ନେଇ ସେମାନଙ୍କ ସହ ସଭାସମିତି କରି ବହୁବାର ଆଲୋଚନା କରିଛି ଏବଂ ପ୍ରତିକାର ପାଇଁ ବିଭାଗୀୟ ଉଚ୍ଚ କର୍ମକର୍ତ୍ତାଙ୍କ ଦୃଷ୍ଟି ଆକର୍ଷଣ କରିଛି । ପ୍ରାଥମିକ ଓ ମାଧମିକ ବିଦ୍ୟାଳୟଗୁଡ଼ିକର ଶିକ୍ଷା ସମସ୍ୟାକୁ ଆଧାର କରି ୧୯୬୭ ମସିହାରୁ ରାଜ୍ୟ ଶିକ୍ଷା ଓ ଗବେଷଣା ପ୍ରତିଷ୍ଠାନ ଦ୍ୱାରା ପ୍ରକାଶିତ 'ଶିକ୍ଷାଲୋକ', ମାଧମିକ ଶିକ୍ଷା ପରିଷଦର ଜର୍ଣ୍ଣାଲ ତଥା ଓଡ଼ିଶାର ମୁଖ୍ୟ ସମ୍ବାଦପତ୍ର 'ସମାଜ' ଓ ଅନ୍ୟାନ୍ୟ ସମ୍ବାଦପତ୍ରରେ ଅନେକ ପ୍ରବନ୍ଧ ପ୍ରକାଶ ପାଇଛି । ସେଇ ପ୍ରବନ୍ଧ ଗୁଡ଼ିକ ପାଠ କରି ମୋର ବହୁ ଶୁଭେଚ୍ଛୁ ବନ୍ଧୁ, ଶିକ୍ଷାବିତ୍ ତଥା ମାନ୍ୟଗଣ୍ୟ ବ୍ୟକ୍ତି ପତ୍ର ଲେଖି ମୋତେ ଦେଶର ସାମ୍ପ୍ରତିକ ଶିକ୍ଷାର ଅବସ୍ଥା ଉପରେ ଅଧିକ ଆଲୋକପାତ କରିବା ପାଇଁ ପ୍ରୋତ୍ସାହନ ଦେଇଛନ୍ତି, ସେଥିପାଇଁ ମୁଁ ସେମାନଙ୍କଠାରେ ଚିରଋଣୀ । ମୋର ହିତାକାଂକ୍ଷୀ ପ୍ରଫେସର ଆଦିତ୍ୟ ପ୍ରସାଦ ପାଢ଼ୀ, ପୂର୍ବତନ କୁଳପତି, ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ, ପ୍ରକାଶିତ ପ୍ରବନ୍ଧଗୁଡ଼ିକୁ ପୁସ୍ତକ ଆକାରରେ ଏକତ୍ରିତ କରିବାକୁ ପ୍ରେରଣା ଦେବା ସହ ଏହି ପୁସ୍ତକର ମୁଖବନ୍ଧ ଲେଖି ପୁସ୍ତକର ମହନୀୟତା ପ୍ରତିପାଦନ କରିଥିବାରୁ ଏବଂ ବନ୍ଧୁ ପ୍ରଫେସର ଜଗନ୍ନାଥ ମହାନ୍ତି, ପ୍ରଫେସର ସେବକ ତ୍ରିପାଠୀ ଓ ଡକ୍ଟର ମୀନକେତନ ପାଠୀ ପତ୍ର-ପତ୍ରିକାରେ ପ୍ରକାଶିତ ପ୍ରବନ୍ଧଗୁଡ଼ିକ ପାଠକରି ସେଗୁଡ଼ିକର ଉପାଦେୟତା ଉପଲବ୍ଧି ପୂର୍ବକ ସଙ୍କଳନ କରିବା ପାଇଁ ପରାମର୍ଶ ଦେଇଥିବାରୁ ସେମାନଙ୍କର ସହୃଦୟତା ପାଇଁ କୃତଜ୍ଞ ।

ସମ୍ବଲପୁରର କଳାପ୍ରେମୀ ତଥା କଳା ଓ ଲୋକ ସଂସ୍କୃତି ଉତ୍ତରଣରେ ପୃଷ୍ଠପୋଷକତାର ଅଗ୍ରଦୂତ ଶ୍ରୀ ଦିଲ୍ଲୀପ କୁମାର ପାଢ଼ୀ ଏହି ପୁସ୍ତକର ପ୍ରଚ୍ଛଦପଟ ଆଗ୍ରହର ସହ ପ୍ରସ୍ତୁତ କରିଥିବାରୁ ଏବଂ ଦୀନବନ୍ଧୁ ମିଶ୍ର ପୁସ୍ତକର ନିର୍ଭୁଲ ପ୍ରକାଶନ ପାଇଁ ଡି.ଟି.ପି ପ୍ରସ୍ତୁତି ନିମନ୍ତେ ଅକ୍ଳାନ୍ତ ପରିଶ୍ରମ କରିଥିବା ଯୋଗୁଁ ସେମାନେ ଧନ୍ୟବାଦାର୍ହ । ସର୍ବୋପରି ଶିକ୍ଷାବିତ୍, ଶିକ୍ଷାପ୍ରେମୀ ପାଠକଗଣ ଏହି ପୁସ୍ତକଟି ପାଠ କରି ମତାମତ ଦେଲେ ଲେଖକ ସେମାନଙ୍କଠାରେ କୃତଜ୍ଞ ହେବ ଓ ତ୍ରୁଟି ଥିଲେ ଦୂରୀକରଣ ପାଇଁ ଉଦ୍ୟମ କରିବ ।

ବିନୀତ
ଲେଖକ

# ସୂଚୀପତ୍ର

# ମୌଳିକ ଅଧିକାର ଓ ଶିକ୍ଷା

ପ୍ରାଥମିକ ଓ ମାଧ୍ୟମିକ ଶିକ୍ଷାକୁ ଗତ ଅର୍ଦ୍ଧଶତାବ୍ଦୀ ମଧ୍ୟରେ ସଂପୂର୍ଣ୍ଣ ଅବହେଳା କରି ଉଚ୍ଚଶିକ୍ଷା ଉପରେ ପ୍ରାଧାନ୍ୟ ଦିଆଯାଉଛି, ଫଳରେ ଦେଶରେ ଜନସଂଖ୍ୟା ବୃଦ୍ଧି ସଙ୍ଗେ ସଙ୍ଗେ ନିରକ୍ଷର ସଂଖ୍ୟା ବଢ଼ିଛି । ବିଳମ୍ବରେ ହେଲେ ବି ଏବେ ଶିକ୍ଷାକୁ ମୌଳିକ ଅଧିକାରର ଅନ୍ତର୍ଭୁକ୍ତ କରାଗଲା ଏବଂ ୯୩ ତମ ସମ୍ବିଧାନ ସଂଶୋଧନ ରାଷ୍ଟ୍ରପତିଙ୍କ ଦ୍ୱାରା ଅନୁମୋଦିତ ହେଲା । ସରକାରଙ୍କ ଏହା ଏକ ସ୍ୱାଗତଯୋଗ୍ୟ ପଦକ୍ଷେପ । ଏତଦ୍ୱାରା ୧୯୦ ନିୟୁତ୍ ବାଳକ ବାଳିକା ହାଇସ୍କୁଲ ପର୍ଯ୍ୟନ୍ତ ନିଃଶୁଳ୍କ ଶିକ୍ଷା ପାଇବା ପାଇଁ ସାମ୍ବିଧାନିକ ଅଧିକାର ପାଇଲେ । ଛଅବର୍ଷରୁ ଚଉଦବର୍ଷର ଦେଶର ସମସ୍ତ ବାଳକବାଳିକାଙ୍କୁ ନିଃଶୁଳ୍କ ଓ ବାଧ୍ୟତାମୂଳକ ଶିକ୍ଷାଦେବା ସରକାରଙ୍କ ଦାୟିତ୍ୱ ଓ କର୍ତ୍ତବ୍ୟ ପରିସରଭୁକ୍ତ ହେଲା । ଏତଦ୍‌ବ୍ୟତୀତ ଆନୁଷ୍ଠାନିକ ଶିକ୍ଷା ସମ୍ପୂର୍ଣ୍ଣ କରିନଥିବା ୩୫ ନିୟୁତ ବାଳକ ବାଳିକାଙ୍କୁ ଶିକ୍ଷାର ମୁଖ୍ୟସ୍ରୋତରେ ଏହି ଆଇନ ବଳରେ ସାମିଲ କରାଯିବ । ସରକାର ତାଙ୍କ କର୍ତ୍ତବ୍ୟରେ ଖିଲାପ କଲେ ଆଇନ ଅଦାଲତର ଆଶ୍ରୟ ନିଆଯାଇ ପାରିବ । ଅପରପକ୍ଷରେ, ପିତାମାତା ସେମାନଙ୍କ ସାମ୍ବିଧାନିକ କର୍ତ୍ତବ୍ୟପାଳନ କରି ସନ୍ତାନସନ୍ତତିଙ୍କୁ ବିଦ୍ୟାଳୟକୁ ପଠାଇବା ପାଇଁ ବାଧ୍ୟ ହେବେ । ପୁନଶ୍ଚ, ସମ୍ବିଧାନର ୪୫ ଧାରାରେ ସୂଚାଇ ଦିଆଯାଇଛି ଯେ, ପିଲାଙ୍କୁ ଛଅବର୍ଷ ପର୍ଯ୍ୟନ୍ତ ପ୍ରାକ୍-ପ୍ରାଥମିକ ଶିକ୍ଷା ଦେବା ରାଜ୍ୟ ସରକାରଙ୍କ ସାମ୍ବିଧାନିକ ଦାୟିତ୍ୱ । କେନ୍ଦ୍ର ମାନବ ସମ୍ବଳ ବିକାଶ ମନ୍ତ୍ରୀ ଡକ୍ଟର ମୁରଲୀ ମନୋହର ଯୋଶୀ କହିଛନ୍ତି ଯେ ସମ୍ବିଧାନର ଏହି ସଂଶୋଧନ କରିଦେଲେ ଦେଶବାସୀଙ୍କୁ ଯେ ସାମାଜିକ, ଅର୍ଥନୈତିକ ତଥା ରାଜନୈତିକ ନ୍ୟାୟ ମିଳିବ ଏହା ଆଶା କରିବା ବୃଥା । ନିଃଶୁଳ୍କ ଶିକ୍ଷା କହିଲେ କ'ଣ ବୁଝିବାକୁ ହେବ ତାର ବିଶଦ ବ୍ୟାଖ୍ୟା ଦରକାର । ଏ ଦେଶର ଶତକଡ଼ା ୩୦ ଭାଗ ଜନତା ଦାରିଦ୍ର୍ୟ ସୀମାରେଖା ତଳେ । ସେମାନଙ୍କ ପିଲାଙ୍କ ପାଇଁ ଖାଦ୍ୟ, ପୋଷାକ, ପଠନ ସାମଗ୍ରୀ ଆଦିର ବ୍ୟବସ୍ଥା କରିବାକୁ ହେବ । ସେମାନେ ପରିବାରର ଭରଣ ପୋଷଣ ପାଇଁ ପିଲାଙ୍କୁ କାମରେ ଲଗାନ୍ତି । ପୁଣି ଝିଅ ପିଲାଏ ବାପା ମା' କାମକୁ ଗଲେ ଘର କରିବା, ରୋଷେଇ କରିବା ଓ ଛୋଟ ଭାଇଭଉଣୀ ଥିଲେ ସେମାନଙ୍କ ଯତ୍ନ ନେବା କାମରେ ରହି ବିଦ୍ୟାଳୟକୁ ଯାଆନ୍ତି ନାହିଁ । ଏ ସମସ୍ୟାଗୁଡ଼ିକର ସମାଧାନ କରାଯିବ କିପରି ? ଏଥିପାଇଁ ସୁଚିନ୍ତିତ ଯୋଜନା ଦରକାର ।

ପ୍ରାଥମିକ ସ୍ତରରେ ଅନ୍ୟ ଏକ ବଡ଼ ସମସ୍ୟା ହେଲା ଅଧାରୁ ସ୍କୁଲ ଛାଡ଼ିବା । ଶତକଡ଼ା ୭୫ ଭାଗ ଛାତ୍ରଛାତ୍ରୀ ଏହି ସ୍ତରରେ ବିଦ୍ୟାଳୟ ପରିତ୍ୟାଗ କରନ୍ତି । ଏଣୁ ଚଉଦବର୍ଷ ବୟସ ପର୍ଯ୍ୟନ୍ତ ସେମାନେ

ଯେପରି ପାଠପଢ଼ା ନ ଛାଡ଼ିବେ ତା'ର ବ୍ୟବସ୍ଥା କରିବାକୁ ହେବ। ସ୍ୱାଧୀନତା ପରେ ଲୋକପ୍ରିୟତା ଅର୍ଜନ ତଥା ଭୋଟ ସଂଗ୍ରହ ପାଇଁ ଦେଶର ଜନ ପ୍ରତିନିଧି ଗଣ ଲୋକଙ୍କୁ ନୂତନ ଦୀକ୍ଷା ଦେଇଛନ୍ତି ଯେ ଏ ଗଣତନ୍ତ୍ର ସରକାର, ଏଣୁ ଲୋକଙ୍କ ପାଇଁ ଯାହାସବୁ ଦରକାର ସରକାର କରିବେ। ଲୋକେ କିଛି କରିବା ଆବଶ୍ୟକ ନାହିଁ। ଫଳରେ କୌଣସି ସାମୂହିକ କାମ ଲୋକ କରୁନାହାନ୍ତି (ଯାହା ଆଗେ ନିଜେ କରୁଥିଲେ) ଏବଂ ଅପରପକ୍ଷେ ସରକାର ବି କରୁନାହାନ୍ତି। ବର୍ଷାଦିନରେ ଲୋକେ ଗାଁ ଦାଣ୍ଡରେ କାଦୁଅରେ ଚାଲୁଛନ୍ତି ଅଥଚ ରାସ୍ତା ମରାମତି କରିବା ବା ରାସ୍ତାରେ ମୁଠାଏ ମୋରମ୍ ପକେଇବା ପାଇଁ ରାଜି ନୁହନ୍ତି। ସ୍କୁଲ ଘର ଛାତରୁ ପାଣି ଗଳୁଛି, ନିଜ ପିଲାଏ ଅସୁବିଧାରେ ବସି ପାଠ ପଢୁଛନ୍ତି ଅଥଚ ଗ୍ରାମବାସୀ ବା ଅଭିଭାବକବୃନ୍ଦ ସ୍କୁଲଛାତ ମରାମତି କରିବା ପାଇଁ ବୀତସ୍ପୃହ। ଜନତାର ବିନା ସାହାଯ୍ୟରେ ସରକାର ଶିକ୍ଷାକୁ ନିଃଶୁଳ୍କ କରି ବିଦ୍ୟାଳୟର ଅଭାବ ପୂରଣ କରିବାକୁ ସମର୍ଥ ହେବେ ତ ? ଏ ଏକ ବିରାଟ ପ୍ରଶ୍ନବାଚୀ। ବିଶ୍ୱବିଖ୍ୟାତ କେମ୍ବ୍ରିଜ, ଅକ୍ସଫୋର୍ଡ ପ୍ରଭୃତି ବିଶ୍ୱବିଦ୍ୟାଳୟ ସରକାରୀ ଦୟା ବା ଦାନ ଉପରେ ନିର୍ଭରଶୀଳ ନୁହନ୍ତି।

ଶିକ୍ଷା ପରିଧିରେ ଶିକ୍ଷକ ହେଉଛନ୍ତି କେନ୍ଦ୍ରବିନ୍ଦୁ। ସରକାର ଶିକ୍ଷାନୁଷ୍ଠାନ ଗୁଡ଼ିକର ଆବଶ୍ୟକ ଅର୍ଥ ଯୋଗାଇ ଦେଇପାରନ୍ତି; କିନ୍ତୁ ଶିକ୍ଷକଙ୍କ କର୍ମନିଷ୍ଠା ଉପରେ ଦାୟିତ୍ୱ ନେବା ସମ୍ଭବ ନୁହେଁ। ଏହା ସମ୍ପୂର୍ଣ୍ଣ ଭାବେ ଶିକ୍ଷକଙ୍କ ବ୍ୟକ୍ତିଗତ ଦାୟିତ୍ୱ। ସେ ଚାହିଁଲେ ଅନୁଷ୍ଠାନର ସର୍ବାଙ୍ଗୀନ ଉନ୍ନତି ହୋଇପାରିବ, ନ ଚାହିଁଲେ ଅନୁଷ୍ଠାନଟି ରସାତଳଗାମୀ ହେବ। ଶିକ୍ଷକତା ବ୍ୟକ୍ତିର ସହଜାତ ଗୁଣ। ସହଜାତଗୁଣ ନଥିବା ବ୍ୟକ୍ତିକୁ ଚାକିରିରେ ମୁକରିର କଲେ ତାଙ୍କଠାରୁ ସୁଫଳ ଆଶା କରିବା ବୃଥା। ଶିକ୍ଷକତା କରିବା ପ୍ରବୃତ୍ତି ନଥିବା ବ୍ୟକ୍ତିଙ୍କଠାରେ ପ୍ରବୃତ୍ତି ଓ ବୃତ୍ତି ମଧ୍ୟରେ ସମନ୍ୱିୟତା ଆଣିବା ସହଜସାଧ୍ୟ ନୁହେଁ। ଜୀବନ ଓ ଜୀବିକା ଅଙ୍ଗାଙ୍ଗୀ ଭାବେ ଜଡ଼ିତ, ଏହା ଖାପଛଡ଼ା ହେବାରୁ ଶିକ୍ଷାର ଅନ୍ତର୍ନିହିତ ଉଦ୍ଦେଶ୍ୟ ସାଧିତ ହୋଇପାରୁନାହିଁ। ଶିକ୍ଷକମାନଙ୍କୁ ତାଲିମ ଦେବାପାଇଁ ତାଲିମ କେନ୍ଦ୍ରମାନ ଖୋଲାଯାଇଛି ଏବଂ ସେଥିପାଇଁ ସରକାରଙ୍କ ତରଫରୁ ପର୍ଯ୍ୟାପ୍ତ ଅର୍ଥ ବ୍ୟୟ କରାଯାଇଛି; କିନ୍ତୁ କର୍ତ୍ତବ୍ୟବୋଧର ଅଭାବ ଓ ନୈତିକ ଚେତନା ବିହୀନ ସମାଜରୁ ଆସୁଥିବା ବ୍ୟକ୍ତିଙ୍କ ଠାରୁ କର୍ତ୍ତବ୍ୟ ପ୍ରତି ନିଷ୍ଠା ମନୋଭାବ ସୃଷ୍ଟି ହୋଇପାରୁନାହିଁ। ପୁନଶ୍ଚ, ସମ୍ପ୍ରତି ସମାଜରେ ରାତେରାତ ଯେନତେନ ପ୍ରକାରେଣ ଧନୀ ହେବାର ପ୍ରୟାସ ବଢ଼ିଛି। ଏଣୁ ଶିକ୍ଷକ ସମାଜ ଦୃଢ଼ତା ଅଭାବରୁ ଧନୋପାର୍ଜ୍ଜନ ପ୍ରତିଯୋଗିତାରୁ ସ୍ୱତନ୍ତ୍ରତା ରକ୍ଷା କରିପାରୁନାହିଁ। ଏହି ଲକ୍ଷ୍ୟରେ ବିଶିଷ୍ଟ ଦାର୍ଶନିକ ଓ ଶିକ୍ଷାବିତ୍ ବୃବେକାର କହିଛନ୍ତି ଯେ, ରାଜନୈତିକ ଓ ଅର୍ଥନୈତିକ ପ୍ରଭାବ ଶିକ୍ଷାର ମାନସିକ ଓ ଆତ୍ମିକ ବିକାଶକୁ କ୍ଷୁର୍ଣ୍ଣ କରେ। ଶିକ୍ଷକଙ୍କଠାରେ କର୍ମନିଷ୍ଠା ସୃଷ୍ଟି କରିବା ତାଲିମ କେନ୍ଦ୍ରମାନଙ୍କ ପ୍ରଧାନ ଦାୟିତ୍ୱ ଓ କର୍ତ୍ତବ୍ୟ ଅଟେ।

ଶିକ୍ଷା କ୍ଷେତ୍ରରେ ଦିଗ୍‌ଦର୍ଶନ ଦେବା ଶିକ୍ଷାବିଭାଗର ଅଙ୍ଗ। 'ପରିଦର୍ଶନ' ଏବେ ଦୁର୍ବଳ ଓ

ଆଦର୍ଶହୀନ । ପୁଣି ଶିକ୍ଷାଦାନରେ ଅଭିଜ୍ଞତା ନଥିବା ବ୍ୟକ୍ତିଙ୍କୁ ପରିଦର୍ଶକ ରୂପେ ନିଯୁକ୍ତି ଦେବା ଫଳରେ ସେମାନେ ଶିକ୍ଷାଦାନରେ ଶିକ୍ଷକମାନଙ୍କୁ ଦିଗ୍‌ଦର୍ଶନ ଦେବାରେ ଅକ୍ଷମ । ଏଣୁ ପରିଦର୍ଶନକୁ ସଫଳ କରିବାକୁ ହେଲେ ବିଷୟ୍ ବିଶାରଦ, ଅଭିଜ୍ଞ ଶିକ୍ଷକମାନଙ୍କୁ ନେଇ ପରିଦର୍ଶକ ମଣ୍ଡଳୀ ଗଢ଼ିବା ନିତାନ୍ତ ଦରକାର । ସରକାର ଏଥିପ୍ରତି ଗୁରୁତ୍ୱଦେଇ ବିହିତ ବ୍ୟବସ୍ଥା କରିବା ଉଚିତ ନଚେତ୍ ବାଧତାମୂଳକ ଶିକ୍ଷା ପ୍ରଚଳନ ବ୍ୟର୍ଥତାରେ ପରିଣତ ହେବ ।

ସମ୍ବିଧାନକୁ ସଂଶୋଧନ କରି ଶିକ୍ଷାକୁ ମୌଳିକ ଅଧିକାରର ଅନ୍ତର୍ଭୁକ୍ତ କରିବା ଦ୍ୱାରା ସରକାରଙ୍କ ଶିକ୍ଷାବିଭାଗର ଦାୟିତ୍ୱ ବହୁଗୁଣରେ ବଢ଼ିଯାଇଛି । ରାଜ୍ୟ ସରକାରଗଣ ବିଶିଷ୍ଟ ଶିକ୍ଷାବିତ୍‌ମାନଙ୍କୁ ନେଇ ସୁଚିନ୍ତିତ ଯୋଜନା କରନ୍ତୁ ଯଦ୍ୱାରା ନିଃଶୁଳ୍କ ଓ ବାଧତାମୂଳକ ଶିକ୍ଷା ପ୍ରକଳ୍ପ ଫଳପ୍ରଦ ହେବାର ପଥ ସୁଗମ ହେବ ।



(ସମାଜ, ଜାନୁଆରୀ ୧୪, ୨୦୦୩ରେ ପ୍ରକାଶିତ)

# ମୂଲ୍ୟବୋଧ ଶିକ୍ଷା

ଉପକ୍ରମ :

ଶିକ୍ଷାର ଉଦ୍ଦେଶ୍ୟ ହେଲା ବ୍ୟକ୍ତିତ୍ୱର ବିକାଶ ଯାହା ଫଳରେ ଶିଶୁ ସମାଜ ତଥା ଦେଶର ପ୍ରଗତିରେ ଉପଯୁକ୍ତ ଭୂମିକା ଗ୍ରହଣ କରିପାରିବ । ଶିକ୍ଷା ଏକ ସାମୂହିକ ପ୍ରକ୍ରିୟା ଯାହାଦ୍ୱାରା ବ୍ୟକ୍ତି ତା'ର ନୈତିକ, ଆଧ୍ୟାତ୍ମିକ, ସୌନ୍ଦର୍ଯ୍ୟାଦି ମୂଲ୍ୟବୋଧର ବିକାଶ କରିବାରେ ସମର୍ଥ ହୋଇପାରେ । ବିଜ୍ଞାନ ତଥା ପ୍ରଯୁକ୍ତି ବିଦ୍ୟାର ଅଗ୍ରଗତି ଫଳରେ ଆଜିର ଏ ବିଂଶ ଶତାବ୍ଦୀର ମାନବ ବସ୍ତୁବାଦୀ ହୋଇପଡ଼ିଛି ଓ ଜୀବନର ମୂଲ୍ୟବୋଧକୁ ସଂପୂର୍ଣ୍ଣ ରୂପେ ହରାଇ ବସିଛି । ଆଜିର ଏ ସଭ୍ୟତା ହଜାର ହଜାର ବର୍ଷ ଧରି ବୈଜ୍ଞାନିକ ମାନଙ୍କ ତ୍ୟାଗ, ନିଷ୍ଠା, ଓ ସତ୍ୟାନୁସନ୍ଧିତ୍ସା ଉପରେ ପ୍ରତିଷ୍ଠିତ । କିନ୍ତୁ ଆମେ ବର୍ତ୍ତମାନ ଏକ ବାରୁଦ ଗଦା ଉପରେ ଦଣ୍ଡାୟମାନ ହୋଇଛୁ । ଏହା ଯେ, କେଉଁ ମୁହୂର୍ତ୍ତରେ ବିସ୍ଫୋରିତ ହୋଇ ମାନବ ସମାଜକୁ ସମୂଳେ ଧ୍ୱଂସ କରିଦେବ, ତାହା କହିହେବ ନାହିଁ । ଗ୍ରୀକ୍ ଦେଶର ଏକ ଲୋକକଥା ଏଠାରେ ଉଦାହରଣ ଦେଲେ ଅତ୍ୟୁକ୍ତି ହେବନାହିଁ । ଡ଼ିଆଡାଲିସ୍ ନାମରେ ଜଣେ କୁଶଳୀ ଶିଳ୍ପୀ ଥିଲେ । ସଂସାର ପ୍ରତି ତାଙ୍କର ବିତୃଷ୍ଣା ମନୋଭାବ ସୃଷ୍ଟି ହେଲା । ସେ ନିଜ ପୁଅସହ ଏ ପୃଥିବୀର ବହୁ ଦୂରକୁ ଚାଲିଯିବାକୁ ମନସ୍ଥ କରି ନିଜେ ଓ ନିଜ ପୁଅ ଇକାରସ୍‌ର ଦେହରେ ଜଉ ସାହାଯ୍ୟରେ ଡ଼େଣା ଯୋଡ଼ିଲେ । ଇକାରସ୍ ଅତିଖୁସିରେ ସୂର୍ଯ୍ୟଙ୍କ ନିକଟକୁ ଉଡ଼ିଗଲା । ସୂର୍ଯ୍ୟ ତାପରେ ଜଉ ତରଳିଗଲା ଓ ଡେଣା ଛିଣ୍ଡିଯିବାରୁ ସେ ଏ.ବି.ଏନ୍ ଉପସାଗରରେ ପଡ଼ି ମୃତ୍ୟୁ ବରଣ କଲା ।

ଏ ମାନବ ସମାଜର ଅବସ୍ଥା ସେଇ ଆଡ଼କୁ ଗତି କରୁଛି । ଆମର ଏ କାରିଗରୀ ଓ ପ୍ରଯୁକ୍ତି ବିଦ୍ୟାର ସଭ୍ୟତା ଆମକୁ ବିଜ୍ଞାନ ବିରୋଧୀ (Anti-Science) ଆଡ଼କୁ ଗତି କରାଉଛି । ଆମର ଜୀବନ ପ୍ରତି ଶ୍ରଦ୍ଧା Biophily ପରିବର୍ତ୍ତେ ମୃତ୍ୟୁ ପ୍ରତି ଶ୍ରଦ୍ଧା (Necrophily) ବଢ଼ିବାରେ ଚାଲିଛି । ଆଫ୍ରିକା ମହାଦେଶରେ ଅନାହାର ଓ ଚିକିତ୍ସା ଅଭାବରୁ ଦୈନିକ ୧୪,୦୦୦ ଶିଶୁର ମୃତ୍ୟୁ ହେଉଥିବା ବେଳେ ଗୋଟିଏ ଅତ୍ୟାଧୁନିକ ବିମାନ ପରିଚାଳନା ପାଇଁ ଦୈନିକ ୫,୯୦,୦୦୦ ପାଉଣ୍ଡ ଖର୍ଚ୍ଚ ହୁଏ । ମାନବ ସମାଜର ମୂଲ୍ୟବୋଧ ବର୍ତ୍ତମାନ ଏଇ ଅବସ୍ଥାରେ ପହଞ୍ଚିଛି । ବରିଷ୍ଠ ବୈଜ୍ଞାନିକ ଆଇନ୍‌ଷ୍ଟାଇନ୍ ମଣିଷର ପ୍ରକୃତିକୁ ଦୁଇ ଭାଗରେ ବିଭକ୍ତ କରିଛନ୍ତି । ଏକ ଅଂଶ ପଶୁତ୍ୱ ଓ ଅନ୍ୟ ଏକ ଅଂଶ ହେଲା ଚିନ୍ତାଶକ୍ତି । ବର୍ତ୍ତମାନ ସମାଜରେ ପଶୁତ୍ୱ (Animal Part) ବିଶେଷ ଭାବେ କାମ କରୁଛି । ତେଣୁ (Bertand Russel)ଙ୍କ ଭାଷାରେ -

"Unless man increases wisdom as much as knowledge, increase of knowledge will be increase of sorrow."

## ସମାଜରେ ମୂଲ୍ୟବୋଧ ହ୍ରାସ :

ପୃଥିବୀ ତଥା ଭାରତବର୍ଷରେ ମୂଲ୍ୟବୋଧ ଅଧଃପତନକୁ ଚିନ୍ତାକରି ଜାତୀୟ ଶିକ୍ଷାନୀତି, ୧୯୮୬ର ତୃତୀୟ ଅଧ୍ୟାୟ, ଅଷ୍ଟମ ପରିଚ୍ଛେଦରେ ମୂଲ୍ୟବୋଧ ଶିକ୍ଷା ଉପରେ ବିଶେଷ ଗୁରୁତ୍ୱ ଆରୋପ କରିଛି । ଏହାର ଉଦ୍ଦେଶ୍ୟ ହେଲା ସମାଜରେ ଦ୍ରୁତ ଗତିରେ ହ୍ରାସ ପାଇଥିବା ସାମାଜିକ ଓ ନୈତିକ ମୂଲ୍ୟବୋଧକୁ ପୁନର୍ଜୀବିତ କରାଇବା । ଏହା ପୂର୍ବରୁ ବିଭିନ୍ନ କମିଶନ ଯଥା : University Education Commission, 1948 Seconday Education Commission, 1952 Kothari Commission, 1964 National Policy of Education 1986 ଓ ଗାନ୍ଧିଜୀଙ୍କ ବେସିକ୍ ଶିକ୍ଷାରେ ମୂଲ୍ୟବୋଧ ଶିକ୍ଷା ଉପରେ ପ୍ରାଧାନ୍ୟ ଦେଇଥିଲେ ମଧ ତା'ଉପରେ ସେତେଦୂର ଗୁରୁତ୍ୱ ଆରୋପ କରାଯାଇନଥିଲା । ମଣିଷର ଜୀବନ ଧାରଣ ପାଇଁ ଖାଦ୍ୟ, ବସ୍ତ୍ର ଓ ବାସଗୃହ ଯେପରି ନିତାନ୍ତ ପ୍ରୟୋଜନ, ସେହିପରି ସତ୍ୟ, ସୁଖ ଓ ଶାନ୍ତି ପାଇଁ ମୂଲ୍ୟବୋଧ ଏକାନ୍ତ ଆବଶ୍ୟକ । ଏହି ମୂଲ୍ୟବୋଧର ହ୍ରାସ ରାଜନୈତିକ ତଥା ସାମାଜିକ ସ୍ତରରେ ଦେଶର କର୍ଣ୍ଣଧାର ତଥା ଚେତନଶୀଳ ନାଗରିକମାନଙ୍କ ମନରେ ଗଭୀର ରେଖାପାତ କରିଥିବା କେତେକ ଦୃଷ୍ଟାନ୍ତରୁ ଜଣାପଡ଼େ । ଗତ ୧୯୮୭ ଡ଼ିସେମ୍ବର ୮ ତାରିଖରେ ୯୫ ଜଣ ପାର୍ଲିଆମେଣ୍ଟ ସଦସ୍ୟ ଏହି ମୂଲ୍ୟବୋଧର ଅଧଃପତନ ପାଇଁ ନିଜକୁ ଦୋଷୀ ସାବ୍ୟସ୍ତ କରି ପ୍ରଧାନମନ୍ତ୍ରୀଙ୍କ ପାଖକୁ ପତ୍ର ଲେଖିଛନ୍ତି । ଇତି ମଧରେ ଘଟିଯାଇଥିବା ଘଟଣା ଯଥା - ଜଗଦ୍‌ଗୁରୁ ପୁରୀ ଶଙ୍କରାଚାର୍ଯ୍ୟଙ୍କ ସତୀଦାହ ପ୍ରଥାର ସମର୍ଥନ, ରାଜପୁତାନାର ଯୁବଗୋଷ୍ଠୀ ଏହାର ସପକ୍ଷରେ ସ୍ୱର ଉତ୍ତୋଳନ, ପୁନଶ୍ଚ ସ୍ୱାମୀ ଅଗ୍ନେଶଙ୍କ ସତୀଦାହ ପ୍ରଥାର ବିରୋଧୀ ଆନ୍ଦୋଳନ ଓ ଆହୁରି ଅନେକ ଘଟଣା ଆମର ଚିନ୍ତାଧାରାକୁ ଚହଲାଇ ଦେଇଛି । ସ୍ୱାଧୀନତାର ୪୧ ବର୍ଷ ପରେ ଆମର ମୂଲ୍ୟବୋଧର ଅଗ୍ରଗତି ଏହି ଅବସ୍ଥାରେ ଆସି ପହଞ୍ଚିଛି । ଯେଉଁ ମୂଲ୍ୟବୋଧକୁ ଗାନ୍ଧିଜୀ ଓ ତତ୍‌କାଳୀନ ସମାଜସେବୀମାନେ ପ୍ରବଳ ବିରୋଧ କରୁଥିଲେ ଯଥା : ବାଲ୍ୟବିବାହ, ଅସ୍ପୃଶ୍ୟତା, ଆଞ୍ଚଳିକତା ଓ ସାମ୍ପ୍ରଦାୟିକତା । ସେଗୁଡ଼ିକ ବର୍ତ୍ତମାନ କେତେ କ୍ଷେତ୍ରରେ ସାମାଜିକ ଜୀବନର ଏକ ଅଙ୍ଗ ରୂପେ ଗ୍ରହଣ କରାଯାଉଛି ।

## ଶିକ୍ଷାର ଉଦ୍ଦେଶ୍ୟ :

ବର୍ତ୍ତମାନ ଶିକ୍ଷାର ଲକ୍ଷ୍ୟ ହେଲା - "Education is now not preparation of life but participation in life."

ଆମେ 3.HS ଉପରେ ବିଶେଷ ଗୁରୁତ୍ୱ ଦେଉଛୁ । ସେଗୁଡ଼ିକ ହେଲା - ମସ୍ତିଷ୍କ (Head),

ହସ୍ତ (Hand), ହୃଦୟ (Heart) । ପ୍ରଥମତଃ, ଛାତ୍ରଛାତ୍ରୀ ମାନଙ୍କର ବୌଦ୍ଧିକ ବିକାଶ ପାଇଁ ଯାହା ଆବଶ୍ୟକ, ଶିକ୍ଷାଦାନ ପ୍ରଣାଳୀରେ ତାର ବ୍ୟବସ୍ଥା ରହିବ । ଦ୍ୱିତୀୟତଃ, ଛାତ୍ରଛାତ୍ରୀଙ୍କୁ କୌଣସି ଏକ ଦିଗରେ ବୈଷୟିକ ଶିକ୍ଷାଦେଇ ସେମାନଙ୍କୁ ଭବିଷ୍ୟତ ଜୀବନ ଧାରଣ ପାଇଁ ପ୍ରସ୍ତୁତ କରାଯିବ । ତୃତୀୟତଃ, ମୂଲ୍ୟବୋଧ ଶିକ୍ଷା ଉପରେ ବିଶେଷ ପ୍ରାଧାନ୍ୟ ଦିଆଯିବ । ଏହି ପରିବର୍ତ୍ତିତ ଶିକ୍ଷା ନୀତିର ଅନ୍ତର୍ନିହିତ ଉଦ୍ଦେଶ୍ୟ ହେଲା ମାନବ ସମ୍ବଳର ବିକାଶ, ବୈଜ୍ଞାନିକ ଦୃଷ୍ଟିକୋଣର ଅଭିବୃଦ୍ଧି, ଦେଶ ଓ ଆନ୍ତର୍ଜାତିକ କ୍ଷେତ୍ରରେ ଶାନ୍ତି ପ୍ରତିଷ୍ଠା, ଧର୍ମନିରପେକ୍ଷତା ରକ୍ଷା, ଗଣତନ୍ତ୍ର ଓ ସମାଜବାଦର ସୁରକ୍ଷା ଓ ମାନବିକ ମୂଲ୍ୟବୋଧ ଇତ୍ୟାଦି ।

ଏହାର ଆବଶ୍ୟକତା କ'ଣ :

ଶିକ୍ଷାଦ୍ୱାରା ମାନବ ବ୍ୟକ୍ତିତ୍ୱର ସମସ୍ତ ବିଭାବର ବିକାଶ ହୋଇଥାଏ । ଆମର ଅତୀତରେ ବହୁଦିନର ଗୃହୀତ ମୂଲ୍ୟବୋଧ ଆଜି ବିପଦର ସମ୍ମୁଖୀନ । ଆମେ ଅତୀତରେ କେବେ ଆଞ୍ଚଳିକତା ବା ସାମ୍ପ୍ରଦାୟିକତା ମନୋଭାବ ପୋଷଣ କରି ନଥିଲୁ । ଆମେ ସବୁବେଳେ ଆମ ଦେଶ ମହାନ୍ ଓ ଏକ ବୋଲି ବୈଦିକ କାଳରୁ ଚିନ୍ତା କରିଛୁ । ଆମ ଋଗ୍‌ବେଦରେ ଅଛି -

*ଅହଂ ରାଷ୍ଟ୍ରୀ ସଂଗମନୀ ବସୂନାଂ ଚିକିତୁଷୀଂ ପ୍ରଥମଂ ଯଜ୍ଞୀୟାନମ୍ ।*

ମୁଁ ରାଷ୍ଟ୍ରଶକ୍ତି, ଧନ ଉପାର୍ଜନ କର୍ତ୍ତ୍ରୀ ଓ ପୂଜନୀୟା ମାନଙ୍କ ମଧ୍ୟରେ ସର୍ବଶ୍ରେଷ୍ଠ ଅଟେ ।

ଆମର ଚିନ୍ତା ଥିଲା ଯେ, ଆମେ ଆକୁମାରୀ ହିମାଚଳର ବାସିନ୍ଦା ଏକ ଓ ଅଭିନ୍ନ । ଶୁଭକର୍ମ ଆରମ୍ଭରେ ଆମେ ପବିତ୍ର ବାକ୍ୟ ଉଚ୍ଚାରଣ କରୁ -

*ଓଁ ଗଙ୍ଗେ ଚ ଯମୁନେ ଚୈବ ଗୋଦାବରୀ ସରସ୍ୱତୀ, ନର୍ମଦେ ସିନ୍ଧୁ କାବେରୀ*
*ଜଳେଽସ୍ମିନ୍ ସନ୍ନିଧିଂ କୁରୁଃ ।*

ଉର୍ଦ୍ଦୁକବି ଇକ୍‌ବାଲ୍ କହିଥିଲେ ଯେ -

"Religion does not teach us animosity" ଉପଯୁକ୍ତ ବିଦ୍ୟା ହେଉଛି - ସା ବିଦ୍ୟା ୟା ବିମୁକ୍ତାୟେ । ବିଦ୍ୟା ଆମକୁ ସଂକୀର୍ଣ୍ଣତାର ଉର୍ଦ୍ଧ୍ୱରେ ରଖି ବନ୍ଧନ ମୁକ୍ତ କରିବ ।

ଭାରତବର୍ଷରେ ମୂଲ୍ୟବୋଧ ହ୍ରାସର କାରଣ ଅନୁସନ୍ଧାନ କଲେ ଜଣାଯାଏ ଯେ, କୃଷିଭିତ୍ତିକ ସମାଜ ବଦଳରେ ଶିଳ୍ପ ଭିତ୍ତିକ ସମାଜର ପ୍ରତିଷ୍ଠା, ବଂଶାନୁଗତ ଶାସନର ଲୋପ, ଯୌଥ ପରିବାରର କ୍ରମବିଲୟ ଓ ପାଶ୍ଚାତ୍ୟ ଆଦର୍ଶରେ ମୂଲ୍ୟବୋଧର ପରିବର୍ତ୍ତନ ଇତ୍ୟାଦି । ଏ ସମସ୍ତ ଭିତରେ ଗତି କରି ଆମେ ଏକ ଗୋଲକ ଧନ୍ଦା ମଧ୍ୟରେ ପଡ଼ିଛୁ ଓ କୌଣସି ଏକ ନିର୍ଦ୍ଦିଷ୍ଟ ପଥ ଅନୁସରଣ କରିବାରେ ସମର୍ଥ ହୋଇପାରିନାହୁଁ ।

## ମୂଲ୍ୟବୋଧ ଶିକ୍ଷାର ବିଭିନ୍ନ ଦିଗ :

ମଣିଷ କୌଣସି ବିଷୟରେ ଜାଣିବା ପାଇଁ ଆଗ୍ରହୀ ହେବ, ତା'ର ବିଶେଷତ୍ୱ ଅନୁଭବ କରିବ ଓ ଯାହା ଅନୁଭବ କଲା ତାକୁ ଆଚରଣରେ ପରିଣତ କରିବ। ସମୟର ପରିବର୍ତ୍ତନ ଅନୁଯାୟୀ ମୂଲ୍ୟବୋଧର ପରିବର୍ତ୍ତନ ଘଟୁଛି। ମୂଲ୍ୟବୋଧ ଶିକ୍ଷା ପାଇଁ ପ୍ରତ୍ୟେକର ମୂଳତତ୍ତ୍ୱ ଉପରେ ପ୍ରାଧାନ୍ୟ ଦେବାକୁ ପଡ଼ିବ। ସତ୍ୟ, ଆନ୍ତରିକତା, ସାଧୁତା, ଉତ୍ତମତା, ସୌନ୍ଦର୍ଯ୍ୟ ବୋଧ, ପ୍ରେମ, ଅହିଂସା, ଦୟା, ସହନଶୀଳତା, ଅଧ୍ୟବସାୟ, ଆତ୍ମସଂଯମ, ସାହସ, ବନ୍ଧୁତା, ଉଦାରତା, ଆତ୍ମତ୍ୟାଗ, ଆତ୍ମବିଶ୍ୱାସ, ଆତ୍ମସମ୍ମାନ, ଦାୟିତ୍ୱଜ୍ଞାନ, ଧର୍ମନିରପେକ୍ଷତା, ଜାତୀୟ ସଂହତି, ସମାଜବାଦ, ସମତା, ସହଯୋଗିତା, ଦାରିଦ୍ର୍ୟ ଦୂରୀକରଣ, ଜାତିଆଣ ପ୍ରଥା, ସାମ୍ପ୍ରଦାୟିକତା ଓ ନିରକ୍ଷରତା ଦୂରୀକରଣ, ଜନସଂଖ୍ୟା ନିୟନ୍ତ୍ରଣ, ବିଶ୍ୱଶାନ୍ତି ପ୍ରତିଷ୍ଠା ପ୍ରଭୃତିର ଆବଶ୍ୟକତା ଓ କାର୍ଯ୍ୟକାରିତା ବିଷୟରେ ଶିଶୁକୁ ଅନୁଭବ କରାଇବାକୁ ହେବ। ନୈତିକ ଶିକ୍ଷା ଏପରି ହେବ ଯେ, ଶିଶୁ ଦଣ୍ଡ ପରିହାର କରି ପୁରସ୍କାର ଗ୍ରହଣ ପାଇଁ କାର୍ଯ୍ୟ କରିବ। ଶିଶୁର ବିବେକ ଓ ବ୍ୟବହାର ଅନ୍ୟର ଅଧିକାରକୁ ସମ୍ମାନ ଦେବାକୁ ପରିଚାଳିତ ହେବ। ଜଣେ ବ୍ୟକ୍ତି ବିଶେଷର ଆଚରଣକୁ ଆମେ ତିନୋଟି 'ମାନେ'ରେ ନିର୍ଦ୍ଧାରଣ କରୁ। ପ୍ରଥମତଃ ତାର ଆଚରଣ ଅନ୍ୟ ନିକଟରେ କେତେଦୂର ସ୍ନେହଶୀଳ ଓ ଆକର୍ଷଣୀୟ ହୋଇ ପାରିଛି। ଆଚାର, ବ୍ୟବହାର ଓ ଭାଷାର ସଂଯମ ବ୍ୟକ୍ତିର ଜୀବନ ଧାରଣର 'ମାନ' ଅଟେ। ଦ୍ୱିତୀୟତଃ ସେ ଅନ୍ୟକୁ କେତେଦୂର ଖୁସି କରାଇ ପାରିବ। କଥାବାର୍ତ୍ତାରେ ସୌଜନ୍ୟ, ଅନ୍ୟର ଗ୍ରହଣୀୟ ଉପଯୋଗୀ ମତପ୍ରକାଶ, ସହନଶୀଳତା, ସହାନୁଭୂତି, ବନ୍ଧୁତା, ସହଯୋଗିତା ଇତ୍ୟାଦି ସାମାଜିକ ଓ ସାଂସ୍କୃତିକ ଜୀବନ ଯାପନ ଦିଗରେ ସେ କେତେଦୂର ସାମର୍ଥ୍ୟ ଲାଭ କରିଛି। ତୃତୀୟତଃ ସେ ନିଜେ କେତେ ଆତ୍ମସନ୍ତୋଷ ଲାଭ କରିପାରୁଛି। ବ୍ୟକ୍ତିର ଆତ୍ମାର ବିକାଶ, ଚିନ୍ତା, ଅନୁଭବ, ବାହ୍ୟଜଗତ ବିଷୟରେ ସମ୍ୟକ୍ ଜ୍ଞାନ, ଉଚ୍ଚ କଳ୍ପନା ଫଳରେ ସେ ସାମାଜିକ ଓ ବାସ୍ତବ ସମସ୍ୟା ସମାଧାନରେ ସମର୍ଥ ହୁଏ।

## ମୂଲ୍ୟବୋଧ ଶିକ୍ଷା ପାଇଁ ଶିକ୍ଷା ଓ ଶିକ୍ଷକଙ୍କ ଭୂମିକା :

ପ୍ରତ୍ୟେକ ପାଠ୍ୟର ବିଷୟବସ୍ତୁକୁ ନେଇ ମୂଲ୍ୟବୋଧ ଉପରେ ତାଲିମ ଦିଆଯିବ। ଉଦାହରଣ ସ୍ୱରୂପ, ବିଜ୍ଞାନ ଶିକ୍ଷାରେ ସତ୍ୟାନୁରାଗ, ଗଣିତରେ ଯୁକ୍ତି ଓ ପରିକଳ୍ପନା ଇତ୍ୟାଦି। ସେଥିପାଇଁ ପାଠ୍ୟୋତ୍ତର ଶିକ୍ଷାରେ ସହିଷ୍ଣୁତା ଓ ଗଣତାନ୍ତ୍ରିକ ଚିନ୍ତାଧାରାର ବିକାଶ ଘଟିଥାଏ। ଶିକ୍ଷକ, ଛାତ୍ର ଓ ସମାଜ ପରସ୍ପର ନିର୍ଭରଶୀଳ। ଏହାର କାର୍ଯ୍ୟକାରିତା ଶିକ୍ଷକଙ୍କ ଦକ୍ଷତା, ଛାତ୍ରର ଆନୁଗତ୍ୟ ଓ ସମାଜର ପରିବେଶ ଉପରେ ନିର୍ଭର କରେ। ମସ୍ତିଷ୍କ, ମନ ଓ ହୃଦୟର ପକ୍ରିୟାକୁ ନେଇ ମୂଲ୍ୟବୋଧ ଶିକ୍ଷା ଦେବାକୁ ହେବ।

## ଶିକ୍ଷା ଓ ସାମ୍ପ୍ରତିକ ସମାଜ

କୋଠାରୀ କମିଶନଙ୍କ ମତାନୁଯାୟୀ 'ଗୋଟିଏ ଜାତିର ଭାଗ୍ୟ ଶ୍ରେଣୀ କୋଠରୀ ଭିତରେ ନିୟନ୍ତ୍ରିତ ହୁଏ । ଏଣୁ ଶିକ୍ଷକ ଶିଶୁକୁ କି ରୂପ ଦେବେ, ତାଙ୍କ କୁଶଳୀ ହସ୍ତ ଉପରେ ନିର୍ଭର କରେ । ସେ ଚାହିଁଲେ, ଶିଶୁକୁ ସ.ଭି ରମଣଙ୍କ ପରି ବିଶିଷ୍ଟ ବୈଜ୍ଞାନିକ କରିପାରିବେ ବା ଗାନ୍ଧିଜୀଙ୍କ ପରି ଜଣେ ଜନସେବକର ରୂପ ଦେବେ ବା ପି.ଟି ଉଷାଙ୍କ ପରି ଏସିଆର ଦୌଡ଼ରାଣୀ ରୂପେ ଗଢ଼ି ପାରିବେ ବା ଦସ୍ୟୁରାଜା ମାଖନ ସିଂ ବା ଦସ୍ୟୁରାଣୀ ଫୁଲନ୍ ଦେବୀଙ୍କ ପରି ଦୁର୍ଦ୍ଧର୍ଷ ଡ଼କାୟତ ରୂପେ ଗଢ଼ିବେ। ଶିକ୍ଷକଙ୍କ ବ୍ୟକ୍ତିତ୍ୱ ପିଲା ଉପରେ ବିଶେଷ ପ୍ରଭାବ ପକାଇ ଥାଏ। ଶିକ୍ଷକ ଅନ୍ଧ ବିଶ୍ୱାସ ବା କୁ-ପ୍ରଥାର ବଶବର୍ତ୍ତୀ ନ ହୋଇ ପିଲାମାନଙ୍କ ଯୁକ୍ତିଶକ୍ତି ଓ ବିଚାରଶକ୍ତିର ଅଭିବୃଦ୍ଧି ପାଇଁ କର୍ମ କରିବେ। ମୁଁ ଆଜି ଶିକ୍ଷକ ସମାଜକୁ ଆହ୍ୱାନ କରୁଛି, ଆସନ୍ତୁ, ଏକବିଂଶ ଶତାବ୍ଦୀ ପାଇଁ ପ୍ରସ୍ତୁତ କରାଯାଉଥିବା ବର୍ତ୍ତମାନର ଶିଶୁମାନଙ୍କୁ ଉପଯୁକ୍ତ ମୂଲ୍ୟବୋଧ ଶିକ୍ଷା ଦେଇ ଆଗାମୀ ଶତାବ୍ଦୀର ସୁ-ନାଗରିକ ରୂପେ ଗଢ଼ିବା ପାଇଁ ଆଗଭର ହେବା।



(ମାଧ୍ୟମିକ ଶିକ୍ଷା ପରିଷଦ, ଓଡ଼ିଶାର ଦର୍ପଣରେ ୧୯୮୯-୯୦ ଶିକ୍ଷାବର୍ଷରେ ପ୍ରକାଶିତ)

# ଶିକ୍ଷାର ଗଣତାନ୍ତ୍ରିକରଣ

ଏକ ଗଣତନ୍ତ୍ର ରାଷ୍ଟ୍ରରେ ଶିକ୍ଷାର ରୂପରେଖ କ'ଣ ହେବା ଉଚିତ ତାକୁ ନେଇ ବହୁ କଳ୍ପନା ଜଳ୍ପନା ପରୀକ୍ଷା ନିରୀକ୍ଷା ଚାଲିଛି । ଶିକ୍ଷା କମିଶନ ବସାଯାଉଛି । କମିଶନ ବହୁ ଉପାଦେୟ ମତାମତ ଦେଉଛନ୍ତି, କିନ୍ତୁ ସରକାରଙ୍କ ଶିଥିଳତା ମନୋଭାବ ଯୋଗୁଁ ତାହା କାର୍ଯ୍ୟକାରୀ ହୋଇ ନପାରି ଲାଇବ୍ରେରୀରେ ସାଇତା ହୋଇ ରହେ । ପାଞ୍ଚବର୍ଷ ପରେ ପୁଣି ନୂଆ ସରକାର ଆସିଲେ ପୂର୍ବ ସରକାରଙ୍କ କମିଶନର ରିପୋର୍ଟକୁ କାର୍ଯ୍ୟକାରୀ ନକରି ନୂଆ କମିଶନ ବସାନ୍ତି । ଗଣତନ୍ତ୍ରରେ ଏ ଏକ ଗତାନୁଗତିକ ଧାରା । ଦଳର ନୀତି ହିଁ ମୁଖ୍ୟ, ଦେଶ ନୁହେଁ ।

ଭାରତ ସ୍ୱାଧୀନତା ପାଇଲା ପରେ ଏହା ଏକ ଗଣତନ୍ତ୍ର ରାଷ୍ଟ୍ରର ମର୍ଯ୍ୟାଦା ପାଇଲା । ଏଣୁ ଶିକ୍ଷାର ମଧ୍ୟ ଗଣତାନ୍ତ୍ରିକରଣ ଅପରିହାର୍ଯ୍ୟ ଅଟେ । ସାମ୍ବିଧାନିକ ବ୍ୟବସ୍ଥା ଅନୁଯାୟୀ ଆମ ଗଣତନ୍ତ୍ରକୁ ସୁଦୃଢ଼ କରିବା ପାଇଁ ଚାରୋଟି ବଳିଷ୍ଠ ସ୍ତମ୍ଭ ଉପରେ ପ୍ରତିଷ୍ଠା କରାଯାଇଛି, ତା' ହେଲା ନ୍ୟାୟ, ସ୍ୱାଧୀନତା, ସମତା ଓ ଭାତୃତ୍ୱ । ପୁନଶ୍ଚ, ଦେଶର ନାଗରିକ ମାନଙ୍କୁ କେତେକ ଗୁରୁତ୍ୱପୂର୍ଣ୍ଣ ମୌଳିକ ଅଧିକାର ଦିଆଯାଇଛି । ସେହି ମୌଳିକ ଅଧିକାର ପ୍ରତି ସଚେତନ ହେବା ସକାଶେ ଶିକ୍ଷାର ଗଣତାନ୍ତ୍ରିକରଣ ଆବଶ୍ୟକ । ଏହାଦ୍ୱାରା ଗଣତାନ୍ତ୍ରିକ ଶିକ୍ଷା ବ୍ୟକ୍ତିର ମର୍ଯ୍ୟାଦା, ସ୍ୱାଧୀନତା, ସମତା ଓ ଦାୟିତ୍ୱ ଉପରେ ପ୍ରାଧାନ୍ୟ ଦେଇଥାଏ ଏବଂ ବ୍ୟକ୍ତିର ବ୍ୟକ୍ତିତ୍ୱ ବିକାଶରେ ସହାୟକ ହୁଏ । ଏଣୁ ରାଷ୍ଟ୍ର ଜାତି, ଧର୍ମ, ସମ୍ପ୍ରଦାୟ, ଲିଙ୍ଗ, ଆର୍ଥିକସ୍ଥିତି ଆଦିର ବିଭେଦ ନରଖି ସମସ୍ତଙ୍କ ପ୍ରତି ସମାନ ଶିକ୍ଷାର ବ୍ୟବସ୍ଥା କରିବା ଉଚିତ୍ । କେବଳ ବ୍ୟକ୍ତିର ସାମର୍ଥ୍ୟ ପ୍ରତି ପ୍ରାଧାନ୍ୟ ଦେବା ଦରକାର । ଗଣତନ୍ତ୍ର ରାଷ୍ଟ୍ରରେ ବ୍ୟକ୍ତିର ମର୍ଯ୍ୟାଦା ଶ୍ରମ ମର୍ଯ୍ୟାଦାର ପ୍ରାଧାନ୍ୟ ଉପରେ ନିର୍ଭର କରେ । ବିକାଶଶୀଳ ରାଷ୍ଟ୍ରରେ ଅଳ୍ପଶିକ୍ଷିତ ବ୍ୟକ୍ତି ଶାରୀରିକ ଶ୍ରମ ପାଇଁ ବିମୁଖ ଅଥଚ ଉନ୍ନତ ରାଷ୍ଟ୍ରରେ ଉଚ୍ଚ ଶିକ୍ଷିତ ବ୍ୟକ୍ତି ଯେ କୌଣସି ଶାରୀରିକ ଶ୍ରମ ପାଇଁ ପ୍ରସ୍ତୁତ, ଏହାର ବହୁ ଦୃଷ୍ଟାନ୍ତ ଆମ ଦେଶରେ ହିଁ ଦେଖାଯାଏ । ଶିକ୍ଷା ଏକ ଗଣତନ୍ତ୍ର ରାଷ୍ଟ୍ରର ନୀତି ନିର୍ଦ୍ଧାରଣର ପଥପ୍ରଦର୍ଶକ ହୋଇଥାଏ । ଦାର୍ଶନିକ ରଷୋଙ୍କ ଭାଷାରେ, 'ଆତ୍ମନିର୍ଭରଶୀଳତା ତଥା ଆତ୍ମପ୍ରକାଶ ପାଇଁ ଏହା ଆବଶ୍ୟକ ଅଟେ ।' ସ୍ୱାଧୀନତାର ଅପବ୍ୟବହାର ବିଶୃଙ୍ଖଳାର ପଥ ଉନ୍ମୁକ୍ତ କରେ । ଏଣୁ ବ୍ୟକ୍ତିର ଆତ୍ମସଂଯମ ହିଁ ସ୍ୱାଧୀନତାର ସୁରକ୍ଷା ପାଇଁ ରକ୍ଷାକବଚର କାର୍ଯ୍ୟ କରିଥାଏ । ଦାର୍ଶନିକ ତଥା ଶିକ୍ଷାବିତ୍ ବୃବେକାରଙ୍କ ମତରେ, ଗଣତନ୍ତ୍ର ରାଷ୍ଟ୍ରରେ ବ୍ୟକ୍ତି ସ୍ୱାଧୀନତା ଥିବା ହେତୁ ଶିକ୍ଷା ମଧ୍ୟ ସମସ୍ତଙ୍କ ପାଇଁ ମୁକ୍ତ ହେବା ଉଚିତ । ସେଥିପାଇଁ କୌଣସି ଆର୍ଥିକ ପ୍ରତିବନ୍ଧକ ରହିବା

ଅନୁଚିତ ।

ଗଣତାନ୍ତ୍ରିକ ଶିକ୍ଷା ସମତା ଉପରେ ପ୍ରାଧାନ୍ୟ ଦିଏ କାରଣ ବ୍ୟକ୍ତିର ଧୀଶକ୍ତି ଓ ସହଜାତ ସାମର୍ଥ୍ୟର ବିକାଶ ସର୍ବଦା ଅନୁକୂଳ ପରିସ୍ଥିତି ଉପରେ ନିର୍ଭର କରେ । ଏଣୁ ପିଲାର ସାମର୍ଥ୍ୟକୁ ଦୃଷ୍ଟିରେ ରଖି ଶିକ୍ଷାଦେବା ଉଚିତ୍ । କୋଠାରୀ କମିଶନ ତାଙ୍କ ରିପୋର୍ଟରେ ଏ ବିଷୟରେ ସ୍ପଷ୍ଟଭାବେ ଦର୍ଶାଇଛନ୍ତି ଯେ ଆମ ଦେଶରେ ସରକାର ଏଥିପ୍ରତି ଆଦୌ ଗୁରୁତ୍ୱ ଦିଅନ୍ତି ନାହିଁ । ଏ ଦେଶରେ ଧନିକ ଗୋଷ୍ଠୀର ସନ୍ତାନସନ୍ତତି ପାଇଁ ସ୍ୱତନ୍ତ୍ର ଶିକ୍ଷାର ବ୍ୟବସ୍ଥା ଅଛି । ଏହି ଗୋଷ୍ଠୀ ଚାନ୍ଦା ଓ ମୋଟା ଦରର ଟ୍ୟୁସନ ଫି ଦେଇ ଶିକ୍ଷାକୁ କିଣି ନେଇ ଯାଉଛନ୍ତି ଏବଂ ଅପର ପକ୍ଷରେ ଅର୍ଥାଭାବରେ ଦରିଦ୍ର ଛାତ୍ରଛାତ୍ରୀମାନେ ସ୍ୱତନ୍ତ୍ର ଶିକ୍ଷାରୁ ବଞ୍ଚିତ ହେଉଛନ୍ତି । ଉଚ୍ଚଶିକ୍ଷା ପାଇଁ ଯଦିଓ ସରକାରୀ ରାଜକୋଷରୁ ପର୍ଯ୍ୟାପ୍ତ ଅର୍ଥ ଖର୍ଚ୍ଚ ହେଉଛି ଏହାର ଫାଇଦା ଉଠାଉଛନ୍ତି କେବଳ ଧନିକ ଗୋଷ୍ଠୀର ସନ୍ତାନସନ୍ତତି ଗଣ ଯାହାକି ଏକ ଗଣତାନ୍ତ୍ରିକ ରାଷ୍ଟ୍ରନୀତିର ବିରୁଦ୍ଧାଚରଣ କରୁଛି । ଗଣତାନ୍ତ୍ରିକ ରାଷ୍ଟ୍ରର ଶିକ୍ଷା ଏପରି ହେବା ଉଚିତ ଯଦ୍ୱାରା ପିଲାର ଦାୟିତ୍ୱଜ୍ଞାନ ବଢ଼ିବା ସହ ସେ ଦେଶର ବିକାଶରେ ସକ୍ରିୟ ଅଂଶଗ୍ରହଣ କରିବାକୁ ଆଗଭର ହେବ । ସମାଜର ସୁଖଦୁଃଖରେ ଭାଗୀଦାର ହୋଇ ପରସ୍ପର ପରସ୍ପର ପ୍ରତି ଭ୍ରାତୃତ୍ୱର ପରିବେଶ ସୃଷ୍ଟି କରିବ । ଏତଦ୍ୱାରା ବିଭିନ୍ନତା ମଧ୍ୟରେ ଏକତାର ବାତାବରଣ ପାଇଁ ଅନୁକୂଳ ସ୍ଥିତି ଉପୁଜି ପାରିବ । ଏ ଲକ୍ଷ୍ୟ ସାଧନ ପାଇଁ ଶିକ୍ଷକ ତଥା ଛାତ୍ରସମାଜ ସେମାନଙ୍କ ଅଧିକାର ଓ ଦାୟିତ୍ୱ ଉପରେ ସଚେତନ ହେବେ । ଶିକ୍ଷକ ଶ୍ରେଣୀଗୃହରେ ପାରମ୍ପରିକ ହାକିମତ୍ୱ ଆଚରଣ ପରିହାର କରି ଏକ ସୌହାର୍ଦ୍ଦ୍ୟପୂର୍ଣ୍ଣ ପରିବେଶ ସୃଷ୍ଟି କରିବେ । ରକ୍ଷଣଶୀଳ ସମାଜରେ ବଢ଼ିଥିବା ଶିକ୍ଷକଙ୍କୁ ଏହା କଷ୍ଟକର ହେଲେ ବି ପରିବର୍ତ୍ତିତ ପରିସ୍ଥିତି ସହ ସେ ନିଜକୁ ଖାପ ଖୁଆଇବେ । ଏତଦ୍‌ଭିନ୍ନ ଯଦିଓ ଦେଶର ଆର୍ଥିକ ଦୂରବସ୍ଥା, ସାମାଜିକ ଶିଥିଳତା, ନିମ୍ନମାନର ଜୀବନଯାପନ, ଶିଶୁଶ୍ରମିକ, ଧର୍ମୀୟ ପରମ୍ପରା ଆଦି ଅନେକ ପ୍ରତିବନ୍ଧକ ଅଛି, ସେଗୁଡ଼ିକ ଦୂରକରିବା ପାଇଁ ଗଣତନ୍ତ୍ର ଦେଶର ସରକାର ସମୟ ନିର୍ଦ୍ଧାରିତ ଯୋଜନା କରିବେ; କାରଣ ଗଣତନ୍ତ୍ରର ସୁରକ୍ଷା ତଥା ଏକ ଗଣତାନ୍ତ୍ରିକ ସମାଜ ଗଢ଼ିବା ପାଇଁ ଶିକ୍ଷାର ଆଭିମୁଖ୍ୟ ପରିବର୍ତ୍ତନ କରିବା ସରକାରଙ୍କ ସର୍ବାଦୌ କର୍ତ୍ତବ୍ୟ ଅଟେ ।



(ସମାଜ , ମାର୍ଚ୍ଚ ୮, ୨୦୦୩ରେ ପ୍ରକାଶିତ)

# ଆମ ଶିକ୍ଷା ବ୍ୟବସ୍ଥା ସାମନ୍ତବାଦୀଙ୍କ କବଳରୁ ମୁକ୍ତ କି ?

ଦେଶରୁ ଉପନିବେଶବାଦର ଅପସାରଣ ଓ ସାମନ୍ତବାଦର ଉଚ୍ଛେଦ ପାଇଁ ଦେଶବାସୀ ଦୀର୍ଘକାଳ ସଂଗ୍ରାମ କଲେ । ଫଳସ୍ୱରୂପ ଯଦିଓ ଉପନିବେଶର ପରିସମାପ୍ତି ଘଟିଲା ଏବଂ ସାମନ୍ତବାଦୀଙ୍କୁ ହଟାଇ ଦିଆଗଲା ତଥାପି ଦେଶରୁ ସାମନ୍ତବାଦୀ ମନୋବୃତ୍ତିର ବିଲୋପ ହେଲା କି ? ସ୍ୱାଧୀନୋତ୍ତର ଭାରତବର୍ଷର ସବୁଠାରୁ ବଡ଼ ବିଫଳତା ହେଲା ସମ୍ବିଧାନର ନିର୍ଦ୍ଦେଶ ସତ୍ତ୍ୱେ ପ୍ରାଥମିକ ଶିକ୍ଷାକୁ ବାଧ୍ୟତାମୂଳକ ନକରି ତତ୍‌ପ୍ରତି ବିମୁଖ ମନୋଭାବ ପୋଷଣ କରିବା । ସ୍ୱାଧୀନତା ସଂଗ୍ରାମର ଉଚ୍ଚ ନେତୃବର୍ଗ ତୁଲେ ଓ ଆମ୍ବେଦକରଙ୍କ ଲକ୍ଷ୍ୟ ଥିଲା ଯେ ସ୍ୱାଧୀନତାର ପ୍ରଥମ ଦଶବର୍ଷ ମଧ୍ୟରେ ସାର୍ବଜନୀନ ଶିକ୍ଷା ପ୍ରଚଳନ କରି ସମସ୍ତଙ୍କୁ ସାକ୍ଷର କରିବେ କିନ୍ତୁ ଅର୍ଦ୍ଧଶତାବ୍ଦୀ ଅତିବାହିତ ପରେ ବି ସେ ଲକ୍ଷ୍ୟ ସାଧନ ହେଲା ନାହିଁ । ନାମଲେଖା ଓ ସ୍କୁଲ ପରିତ୍ୟାଗ ମଧ୍ୟରେ ବ୍ୟବଧାନ ବଢ଼ି ବଢ଼ି ଚାଲିଛି । ଏବେ ବି ଦେଶରେ ଶତକଡ଼ା ଚାଳିଶ ପ୍ରତିଶତ ଶିଶୁ ଶିକ୍ଷାଳୟ ଛାଡ଼ି ସ୍ୱଳ୍ପ ପାରିଶ୍ରମିକରେ ମୂଲଲାଗି ଜୀବନ ନିର୍ବାହ କରୁଛନ୍ତି । ପୁନଶ୍ଚ ଜାତୀୟ ଆନ୍ଦୋଳନର ନେତୃବୃନ୍ଦଙ୍କ ଉଦ୍ଦେଶ୍ୟ ଥିଲା ଯେ ଜାତୀୟ ସଂହତି ପାଇଁ ସାର୍ବଜନୀନ ଶିକ୍ଷାକୁ ଏକ ପ୍ରଧାନ ଅଙ୍ଗରୂପେ ଗ୍ରହଣ କରାଯିବ କିନ୍ତୁ ସ୍ୱାଧୀନୋତ୍ତର ଭାରତର ଶାସକଗୋଷ୍ଠୀ ଏହି ଆବଶ୍ୟକତାପ୍ରତି ଆଦୌ ଗୁରୁତ୍ୱ ଦେଲେନାହିଁ । ୟୁନେସ୍କୋ ଏକ ସର୍ବେକ୍ଷଣ କରି ଦର୍ଶାଇଲେ ଯେ ବିଂଶ ଶତାବ୍ଦୀର ଶେଷବେଳକୁ ବିଶ୍ୱ ଜନସଂଖ୍ୟାର ୫୪ଭାଗ ନିରକ୍ଷର କେବଳ ଭାରତବର୍ଷରେ ହିଁ ରହିବେ । ୟୁନେସ୍କୋର ସେଇ ସର୍ବେକ୍ଷଣ ସତ୍ୟରେ ପରିଣତ ହେଲା ।

ସ୍ୱାଧୀନୋତ୍ତର ଭାରତର ଶିକ୍ଷା କ୍ଷେତ୍ରରେ ଦ୍ୱନ୍ଦବାଦ ଅପ୍ରତିହତ ହୋଇ ରହିଛି । ଏକପକ୍ଷରେ ଧନୀକ ଗୋଷ୍ଠୀ ପିଲାଙ୍କୁ ନେଇ ବଢ଼ି ଉଠୁଛି ଇଂରେଜୀ ମାଧ୍ୟମ ଶିକ୍ଷାନୁଷ୍ଠାନ, ଅନ୍ୟପକ୍ଷରେ ସରକାରୀ ସ୍କୁଲ ଖୋଲୁଛି ଦରିଦ୍ର ଶ୍ରେଣୀର ପିଲାଙ୍କ ପାଇଁ, ଯେଉଁ ସ୍କୁଲରେ କି ଶିକ୍ଷକ ନାହାନ୍ତି, ଚକ୍ ବା କଳାପଟା ନାହିଁ ଏବଂ ସ୍କୁଲ ଚାଲୁଛି କାହା ଘରବାରଣ୍ଡାରେ ବା କେଉଁ ଗଛମୂଳରେ । ଏଇ ଉଭୟ ଶିକ୍ଷା ମଧ୍ୟରେ ବିରାଟ ତାରତମ୍ୟ ରହୁଛି । ନିଜକୁ ସମାଜର ଉଚ୍ଚ ସୋପାନରେ ରଖିବା ପାଇଁ ଏହା ସାମନ୍ତବାଦର ଚକ୍ରାନ୍ତ ନୁହେଁ କି ? ସରକାର ପୁଣି ଖୋଲିଲେ ନବୋଦୟ ବିଦ୍ୟାଳୟ । ସାମନ୍ତବାଦକୁ ପ୍ରଶ୍ରୟ ଦେବାପାଇଁ ଏ ଏକ ଅଭିନବ ଚକ୍ରାନ୍ତ । ଏହି ଶିକ୍ଷାପଦ୍ଧତିରେ ସାମନ୍ତବାଦ ଯୁଗର ରୀତିନୀତି ସବୁ ରହିଲା । ଦେଶରେ ଏକପ୍ରକାର ଶିକ୍ଷା ପ୍ରଚଳନ ନକରି ସମ୍ବିଧାନ ନିର୍ଦ୍ଦେଶକୁ ଅବମାନନା କରାଗଲା ।

ସମ୍ପ୍ରତି ପ୍ରଚଳିତ ଶିକ୍ଷାପଦ୍ଧତି ଓ ଶିକ୍ଷକଙ୍କ ମନୋବୃତ୍ତିରେ ବି ସାମନ୍ତବାଦର ପ୍ରଚ୍ଛାୟା ପରିଦୃଷ୍ଟ

ହୁଏ । ବିଦ୍ୟାଳୟରେ ଶିକ୍ଷକଙ୍କ ଶାହୀ ଶାସନ, ବେତ୍ରାଘାତ ଏବଂ ଅପରପକ୍ଷରେ ମଧ୍ୟବିତ୍ତ ଶ୍ରେଣୀର ପିତାମାତାଙ୍କ ଗୃହରେ ପିଲାଙ୍କୁ ଦୈହିକ ଦଣ୍ଡଦ୍ୱାରା ଭୀତିପ୍ରଦର୍ଶନ ସାମନ୍ତବାଦୀ ଶାସନ ପରମ୍ପରାରୁ ଅନୁସୃତ । ଶିକ୍ଷାନୁଷ୍ଠାନ ଗୁଡ଼ିକରେ ପ୍ରବେଶ କଲେ ଏବେ ବି ସାମନ୍ତବାଦର ସାମ୍ରାଜ୍ୟ ମଧ୍ୟରେ ପ୍ରବେଶ କଲାପରି ଅନୁଭୂତ ହୁଏ ।

ପୁଞ୍ଜିବାଦୀ ଅଭିମୁଖୀ ସାମାଜିକ ବ୍ୟବସ୍ଥା ଓ ସାମ୍ରାଜ୍ୟବାଦର ପ୍ରଭାବ ଆମ ଶିକ୍ଷା ବ୍ୟବସ୍ଥାକୁ ସମ୍ପୂର୍ଣ୍ଣଭାବେ କବଳିକ କରି ରଖିଛି । ଏ ଦେଶରେ ଶିକ୍ଷା ଏକ ବିଷମ ସମସ୍ୟା । ଦେଶର ନେତୃବୃନ୍ଦ ବା ବୁଦ୍ଧିଜୀବୀ ଗୋଷ୍ଠୀ ଯେଉଁ ସାମାଜିକ ବ୍ୟବସ୍ଥାରେ ସେମାନଙ୍କ ସୃଷ୍ଟି ଓ ସମୃଦ୍ଧି, ତାକୁ ଅପସାରଣ କରିବା ସେମାନଙ୍କ ପକ୍ଷେ ସମ୍ଭବ ନୁହେଁ । ଦିନ ଆସିବ, ଯେଉଁମାନେ ଏହି ଶିକ୍ଷା ବ୍ୟବସ୍ଥାରେ ଅବହେଳିତ, ସେମାନେ ଏହା ବିରୋଧରେ ସ୍ୱର ଉତ୍ତୋଳନ କରିବେ ଏବଂ ସେତେବଳେ ହିଁ ଏ ଦେଶର ଶିକ୍ଷା ସାମନ୍ତବାଦୀ କବଳରୁ ମୁକ୍ତ ହେବ । ସାମନ୍ତବାଦୀ ସମାଜରେ ପରିପୁଷ୍ଟ ନେତୃବୃନ୍ଦ ଓ ଶିକ୍ଷାବିତ୍‌ମାନଙ୍କ ଠାରୁ କୌଣସି ପରିବର୍ତ୍ତନ ଆଶା କରିବା ବିଡ଼ମ୍ବନା ମାତ୍ର ।



(ସମାଜ, ମାର୍ଚ୍ଚ ୧୬, ୨୦୦୧ ରେ ପ୍ରକାଶିତ)

# ବ୍ୟକ୍ତିର ଚରିତ୍ର ଗଠନ ପାଇଁ ବେଦର ଶିକ୍ଷା

ବେଦ ଯଦିଓ ଏକ ପ୍ରାଚୀନତମ ଗ୍ରନ୍ଥ, ବ୍ୟକ୍ତିର ଚରିତ୍ର ଗଠନ ତଥା ଏକ ସଂସ୍କୃତିସମ୍ପନ୍ନ ମଣିଷ ଗଠନ ଦିଗରେ ଏଥିରେ ବହୁ ଉପାଦେୟ ଓ ଅମୂଲ୍ୟ ତଥ୍ୟ ନିହିତ ଅଛି । ବେଦର ସ୍ୱାତନ୍ତ୍ର୍ୟ ହେଲା ଏଥିରେ ପ୍ରଦତ୍ତ ଜ୍ଞାନ ସମଗ୍ର ମଣିଷ ସମାଜ ପାଇଁ ଉଦ୍ଦିଷ୍ଟ ଏବଂ ଏହା କୌଣସି ଜାତି, ଧର୍ମ ବା ସଂପ୍ରଦାୟର ସଂକୀର୍ଣ୍ଣ ଗଣ୍ଡି ମଧ୍ୟରେ ଆବଦ୍ଧ ନୁହେଁ । ପ୍ରତ୍ୟେକ ବ୍ୟକ୍ତିର ଆଧ୍ୟାତ୍ମିକ ତଥା ବ୍ୟକ୍ତିର ଉତ୍ତରଣ ଦିଗରେ ବେଦ ସହାୟକ ଅଟେ । ଏହି ପ୍ରାଚୀନ ଗ୍ରନ୍ଥ ବୈଦେଶିକ ଆକ୍ରମଣର ଶିକାର ମଧ୍ୟ ହୋଇଛି, ଏହାକୁ କଦର୍ଥ କରି ଏହାର ପ୍ରାଧାନ୍ୟ ହ୍ରାସ କରାଯାଇଛି । ଏପରିକି, ବେଦକୁ ମେଣ୍ଢା ଓ ଗାଈ ଜଗୁଆଳିର ଲଘୁ ସଂଗୀତ ରୂପେ ବର୍ଣ୍ଣନା କରି ଏହାର ମହତ୍ତ୍ୱକୁ ସଂକୁଚିତ କରାଯାଇଛି । ଏସବୁ ସତ୍ତ୍ୱେ ବେଦର ପ୍ରାଧାନ୍ୟ ଯୁଗେ ଯୁଗେ ଅକ୍ଷୁର୍ଣ୍ଣ ରହିଛି ।

ବ୍ୟକ୍ତିଗତ ଚରିତ୍ର ଗଠନ ପାଇଁ ବେଦରେ କୁହାଯାଇଛି ଯେ -

*"ମୃତ୍ୟୋଃ ପଦଂ ଯୋପୟନ୍ତୋ ଯଦୈତ ଦ୍ରାଘୀୟ ଆୟୁଃ ପ୍ରତରଂ ଦଧାନାଃ ।*
*ଆପ୍ୟାୟମାନାଃ ପ୍ରଜାୟାଧନେନ, ଶୁଦ୍ଧାଃ ପୂତା ଭବତ ଯଜ୍ଞିୟାସଃ ॥"*

(ଋଗ୍‌ବେଦ ୧୦/୧୮/୨)

ଅର୍ଥାତ୍ ଯେ ଖଳ ଚରିତ୍ର ପରିବର୍ତ୍ତେ ଉତ୍ତମ ନୈତିକ ଚରିତ୍ର ଗଠନ କରିବ, ସେ ଜୀବନରେ ଶ୍ରେଷ୍ଠତା ସହ ଦୀର୍ଘଜୀବନ ଲାଭ କରିବ । ଅର୍ଥ ତଥା ପୁତ୍ର ପୌତ୍ରାଦି ଲାଭ କରି ଶାରୀରିକ ଓ ମାନସିକ ସ୍ୱଚ୍ଛତା ପ୍ରାପ୍ତ ହେବ ।

ଋଗ୍ ବେଦରେ ବ୍ୟକ୍ତିକୁ ଅନ୍ୟର ସୁଖଶାନ୍ତି ପାଇଁ ଉତ୍ତମ କାର୍ଯ୍ୟ କରିବା ପାଇଁ ଉପଦେଶ ଦିଆଯାଇଛି -

*"ମଧୁ ନକ୍ତମୁତୋଷସୋ ମଧୁମତ୍ ପାର୍ଥିବଂ ରଜଃ ।*
*ମଧୁ ଦ୍ୟୌରସ୍ତୁ ନଃ ପିତା ॥*

(ଋଗ୍‌ବେଦ ୧/୯୦/୭)

ଅର୍ଥାତ୍ ସଂସାରରେ ଏପରି କାମକର ଯଦ୍ୱାରା ସମସ୍ତେ ସୁଖ, ଶାନ୍ତି ଓ ଆନନ୍ଦ ଉପଭୋଗ କରିପାରିବେ ।

ପୁନଶ୍ଚ କୁହାଯାଇଛି ଯେ ଅନ୍ୟର ମଙ୍ଗଳ କଲାବେଳେ କୌଣସି ନିନ୍ଦା, ବଦନାମ ବା ବିଦ୍ରୂପ ପ୍ରତି ଭ୍ରୂକ୍ଷେପ କରିବ ନାହିଁ, ଈଶ୍ୱର ହିଁ ଏହି ବ୍ୟକ୍ତିକୁ ସାହାଯ୍ୟ କରିବା ନିମିତ୍ତ ଆଗେଇ ଆସିବେ । ଯଥା

*"ଯେ ପାୟବୋ ମାମତେୟଂ ତେ ଅଗ୍ନେ ପଶ୍ୟନ୍ତୋ ଅନ୍ଧଂ ଦୂରିତା ଦରକ୍ଷନ୍ ।*
*ରରକ୍ଷ ତାନ୍ତସୁକୃତୋ ବିଶ୍ୱବେଦା ଦିପ୍‌ସନ୍ତ ଇଦ୍ରିପବୋ ନାହ ଦେଭୁଃ ॥"*

(ଋଗ୍‌ବେଦ ୧/୧୪୭/୩)

ସଂସାରରେ ପ୍ରତ୍ୟେକ ମଣିଷ ସୁଖୀ ହେବାକୁ ଚାହେଁ । ସେଥିପାଇଁ ନିଜର ବୁଦ୍ଧି ଓ ଶକ୍ତିକୁ ଖଟାଇ ବିଭିନ୍ନ ଉପାୟ ସ୍ଥିର କରେ ଏବଂ ତଦନୁଯାୟୀ କାର୍ଯ୍ୟରେ ଆଗେଇଯାଏ । ଜୀବନ ପ୍ରତି ବିମୁଖ ମନୋଭାବ ଅନେକ ସମୟରେ ଦୁଃଖର ହେତୁ ହୋଇଥାଏ । ସମୟ ସମୟରେ ଅଜ୍ଞତା, ସ୍ୱାର୍ଥପରତା ଯୋଗୁଁ ବ୍ୟକ୍ତି ନିଜର ବିନାଶ କରିଥାଏ । ବେଦରେ ତା'ର ନିରାକରଣ ପାଇଁ ବ୍ୟବସ୍ଥା କରାଯାଇଛି । ଋଗ୍‌ବେଦରେ ଏହାର ଦୃଷ୍ଟାନ୍ତ ଦିଆଯାଇଛି ଯେ -

*"ମାନୋ ଅଗ୍ନେଽମତୟେ ମାବୀରତାୟୈ ରୀରଧଃ*
*ମାଗୋତାୟେ ସହସସ୍ପୁତ୍ର ମା ନିଦେଽଗ ଦ୍ୱେଷାଂ ସ୍ୟା କୃଧି ॥"*

(ଋଗ୍‌ବେଦ ୩/୧୬/୫)

ଅର୍ଥାତ୍ ଜୀବନର ସଫଳତା ପାଇଁ ବୁଦ୍ଧିମାନ, ସାହସୀ ଓ ବିଭବଶାଳୀ ହେବା । କୁତ୍ସାରଟନାକାରୀ, ପ୍ରବଞ୍ଚକ, ଚୁଗୁଲିଆ ଓ ଅଶିଷ୍ଟ ହେବାନାହିଁ । ଆମେ ନିଜକୁ ଧୀଶକ୍ତିରୁ ବିଚ୍ୟୁତ ନକଲେ ଆଜୀବନ ସୁଖୀ ହେବା ଏବଂ ଈଶ୍ୱରଙ୍କୁ ପୂଜା ଅର୍ଚ୍ଚନା କରିପାରିବା ।

ଏକ ସଫଳ ଜୀବନ ପାଇଁ ନିରବଚ୍ଛିନ୍ନ ସାଧନାର ଏକାନ୍ତ ଆବଶ୍ୟକ । ସମୟର ସଦୁପଯୋଗ ସାଧନାର ପଥକୁ ସରଳ ଓ ସାବଲୀଳ କରେ । ସମୟର ସଦୁପଯୋଗ ନକରି ଅନେକେ ଜୀବନକୁ ବିପଥଗାମୀ କରିଛନ୍ତି । ସମୟର ଅନ୍ୟନାମ କାଳ । ଏଣୁ କାଳର ସଦ୍‌ବିନିଯୋଗ ନକଲେ ସେ ମଣିଷର 'କାଳ' ହୋଇଥାଏ । ବେଦ କହେ -

*"କାଳୋ ଅଶ୍ୱୋ ବହୁତି ସପ୍ତରଶ୍ମିଃ । ସହସ୍ରାକ୍ଷୋ ଅଜରୋ ଭୂରିରେତାଃ*
*ତମାରୋହନ୍ତି କବୟୋ ବିପଶ୍ଚିତସ୍ତସ୍ୟ ଚକ୍ରା ଭୁବନାନି ବିଶ୍ୱା ॥"*

(ଅଥର୍ବବେଦ ୧୯/୫୩/୧)

ଅର୍ଥାତ୍ ଆଜି ଯେଉଁ ସମୟ ଚାଲିଗଲା ସେ କେବେ ଫେରିବ ନାହିଁ । ସମୟ ବହୁତ ବଳବାନ୍ । ଏହା ଜାଣି ଜ୍ଞାନୀ ଲୋକମାନେ ସମୟର ସଦୁପଯୋଗ କରିଥାନ୍ତି ।

ଦେଶ ଓ ଜାତି ପ୍ରତି ଉତ୍ସର୍ଗୀକୃତ ମନୋଭାବ ପୋଷଣକରିବାକୁ ବେଦରେ ଉପଦେଶ

ଦିଆଯାଇଛି । ବେଦ କହେ ଦେଶ, ଗୋଷ୍ଠୀ, ଜାତି ଓ ସଂସ୍କୃତି ପ୍ରତି ହୃଦୟର ଅନ୍ତରତମ ପ୍ରଦେଶରେ ଅନୁରକ୍ତି ହେଲେ ହିଁ ସମର୍ପଣ ଭାବ ସୃଷ୍ଟି ହେବ । ଋଗ୍‌ବେଦ ଉଦ୍ଧୃତାଂଶ ଯଥା -

*"ଯଥା ଦେବା ଅସୁରେଷୁ ଶ୍ରଦ୍ଧାମୁଗ୍ରେଷୁ ଚକ୍ରିରେ*
*ଏବଂ ଭୋଜେଷୁ ଯଜ୍ୱସ୍ୱସ୍ମାକ ମୁଦିତଂ କୃଧି ॥"*

(ଋଗ୍‌ବେଦ ୧୦/୧୫୧/୩)

ଯଜୁର୍ବେଦରେ ବୟସ୍କ, ଜ୍ୟେଷ୍ଠ ଓ କନିଷ୍ଠ ମଧ୍ୟରେ ସାକ୍ଷାତ ହେଲେ ପରସ୍ପର ପରସ୍ପର ପ୍ରତି କିପରି ଅଭିବାଦନ ଜଣାଇବେ ତଦ୍ ସମ୍ବନ୍ଧୀୟ ସୂଚନା ଦିଆଯାଇଛି । ଉଲ୍ଲେଖ ଅଛି ଯେ -

*"ନମୋ ଜ୍ୟେଷ୍ଠାୟ ଚ କନିଷ୍ଠାୟ ଚ ନମଃ ପୂର୍ବଜାୟ ଚାପରଜାୟ ଚ ।*
*ନମୋ ମଧ୍ୟମାୟ ଚାପଗଲ୍ଭାୟ ଚ ନମୋ ଜଘନ୍ୟାୟ ଚ ବୁଧ୍ନ୍ୟାୟ ଚ ॥"*

(ଯର୍ଜୁର୍ବେଦ ୧୬/୩୨)

ଅର୍ଥାତ୍ ଜ୍ୟେଷ୍ଠ ଓ କନିଷ୍ଠ, ବୃଦ୍ଧ ଓ ଅଳ୍ପ ବୟସ୍କ ବ୍ୟକ୍ତି ସାକ୍ଷାତରେ ପରସ୍ପର ପରସ୍ପରକୁ ଅଭିବାଦନ ଜଣାଇ 'ନମସ୍ତେ' କହିବେ ଏବଂ ସମ୍ମାନ କରିବେ । ଏତଦ୍ୱାରା ନିଜନିଜ ମଧ୍ୟରେ ସୌହାର୍ଦ୍ଦ୍ୟପୂର୍ଣ୍ଣ ବନ୍ଧୁତା ବୃଦ୍ଧିହେବ ।

ଯୁଗେ ଯୁଗେ ଜ୍ଞାନ ଓ ଜ୍ଞାନୀର ଆଦର ରହିଛି । ପ୍ରାଚୀନ କାଳରେ ସାଧୁ, ସନ୍ନ୍ୟାସୀ ଓ ଜ୍ଞାନୀବ୍ୟକ୍ତି ଜ୍ଞାନଦାନକୁ ଏକ ପବିତ୍ର କାର୍ଯ୍ୟବୋଲି ବିଚାର କରୁଥିଲେ । ସମାଜର ବିକାଶ ପାଇଁ ସେମାନଙ୍କ କାର୍ଯ୍ୟକୁ 'ଋଷିଧର୍ମ' ବୋଲି କୁହାଯାଉଥିଲା । ବେଦ କହେ -

*"ତେ ଅସ୍ମଭ୍ୟଂ ଶର୍ମ ଯଂସନ୍ନମୃତା ମର୍ତ୍ତ୍ୟେଭ୍ୟଃ ।*
*ବାଧମାନା ଅପ ଦ୍ୱିଷଃ ॥"*

(ଋଗ୍‌ବେଦ ୧/୯୦/୩)

ଅର୍ଥାତ୍ ଯେଉଁମାନେ ଜ୍ଞାନୀ ଓ ଉତ୍ତମକାର୍ଯ୍ୟ କରୁଛନ୍ତି, ଚାଲ ସେମାନଙ୍କ ଠାରୁ ଶିକ୍ଷା କରିବା । ଦୁଷ୍ଟ ପ୍ରକୃତି ବ୍ୟକ୍ତିଙ୍କଠାରୁ ଦୂରେଇ ରହିବା ଉଚିତ୍ । ପ୍ରତ୍ୟେକଙ୍କ ମୁକ୍ତି ଏଥିରେ ନିହିତ ଅଛି ।

ମଣିଷର ଚିନ୍ତାଧାରାକୁ ଉନ୍ନତ କରିବାକୁ ହେଲେ ଉଚ୍ଚକୋଟୀର ଲେଖକମାନଙ୍କ ପ୍ରଣୀତ ପୁସ୍ତକ ଅଧ୍ୟୟନ କରିବା ଉଚିତ । ଏକଥା ବେଦରେ ମଧ୍ୟ କୁହାଯାଇଛି -

*"ପାବମାନୀଃ ସ୍ୱସ୍ତ୍ୟୟ ନିସ୍ତାଭିର୍ଗଚ୍ଛତି ନାନ୍ଦନମ୍ ।*
*ପୁଣ୍ୟାଁଶ୍ଚ ଭକ୍ଷାନ ଭକ୍ଷୟତ୍ୟମୃତତ୍ୱଂ ଚ ଗଚ୍ଛତି ॥"*

(ସାମବେଦ ୧୩୦୩)

ଅର୍ଥାତ୍ ଗ୍ରନ୍ଥ ପାଠ ଦ୍ୱାରା ମଣିଷ ଉତ୍ତମ କାର୍ଯ୍ୟ କରିବାପାଇଁ ପ୍ରେରଣା ପାଏ, ପୁରୁଷ ଓ ନାରୀ ଗ୍ରନ୍ଥପାଠରେ ଅଫୁରନ୍ତ ଆନନ୍ଦ ପାଆନ୍ତି । ଉନ୍ନତ ଚିନ୍ତା ସେମାନଙ୍କ ମୁକ୍ତିର ପଥକୁ ଉନ୍ମୁକ୍ତ କରେ ।

ପାଶ୍ଚାତ୍ୟ ସଭ୍ୟତାର ପ୍ରଭାବରେ ଆମେ ବସ୍ତୁବାଦୀ ହୋଇ ଆମ ମୂଳ ସଂସ୍କୃତିରୁ ଦୂରେଇ ଯାଉଛି ଫଳରେ ବ୍ୟକ୍ତି ଚରିତ୍ର ନଷ୍ଟ ହେବା ସହ ପାରିବାରିକ ତଥା ସାମାଜିକ ଜୀବନରୁ ସୁଖ ଓ ଶାନ୍ତି ଉଭେଇ ଯାଉଛି । ଭାରତୀୟ ସଂସ୍କୃତିକୁ ରକ୍ଷା କରିବା ଆମ୍ଭମାନଙ୍କର ସର୍ବାଦୌ କର୍ତ୍ତବ୍ୟ ଅଟେ । ବ୍ୟକ୍ତି ହିଁ ସମସ୍ତ ପରିବର୍ତ୍ତନର କେନ୍ଦ୍ରବିନ୍ଦୁ । ଏଣୁ ବ୍ୟକ୍ତିକୁ ପରିବର୍ତ୍ତନ କରିପାରିଲେ ସମଗ୍ର ମାନବ ସମାଜ ପରିବର୍ତ୍ତନ ହେବ । ଆସନ୍ତୁ,ଆମେ ସମସ୍ତେ ଏ ଦିଗରେ ଉଦ୍ୟମ କରିବାକୁ ସଂକଳ୍ପବଦ୍ଧ ହେବା ।



(ସମାଜ, ସେପ୍ଟେମ୍ବର ୭, ୨୦୦୩ ରେ ପ୍ରକାଶିତ)

# ସଂପ୍ରତି ଶିକ୍ଷା ଓ ଭବିଷ୍ୟତ ସମାଜ

ବିଂଶ ଶତାବ୍ଦୀର ଶେଷ ଦୁଇ ଦଶନ୍ଧିଠାରୁ ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟାର ଶିକ୍ଷା ପ୍ରତି ଛାତ୍ର ତଥା ଅଭିଭାବକମାନଙ୍କ ପ୍ରବଳ ଆଗ୍ରହ ବଢ଼ିବାରେ ଲାଗିଛି । ତନ୍ମଧ୍ୟରୁ ଯାନ୍ତ୍ରିକ ବିଦ୍ୟା ପ୍ରାଧାନ୍ୟ ଲାଭ କରିଛି । ଧନିକ ତଥା ମଧ୍ୟବିତ୍ତ ଶ୍ରେଣୀର ପିତାମାତା ପୁଅ ଓ ଝିଅ ଇଞ୍ଜିନିୟରଟିଏ ହୋଇପାରିଲେ ସେମାନେ ବେଶି ଖୁସି । ସେମାନଙ୍କ ଲକ୍ଷ୍ୟ ପୁଅ ପାଶ୍ଚାତ୍ୟ ଦେଶର କୌଣସି ଏକ ଶିଳ୍ପ ସମୃଦ୍ଧ ଅଞ୍ଚଳର କାରଖାନାରେ ଚାକିରି କରି ଡଲାର ଟଙ୍କା (ଏବେ ଇରୋ କଥା କୁହାଗଲାଣି) ଅର୍ଜନ କରିବ ଏବଂ ସେମାନେ ସ୍ୱଳ୍ପ ସମୟ ମଧ୍ୟରେ ସମାଜର ଉଚ୍ଚ ସ୍ତରରେ ନିଜକୁ ପ୍ରତିଷ୍ଠିତ କରାଇ ବାହାବା ନେବେ । ଏ ସ୍ୱପ୍ନରେ ବହୁ ଅଭିଭାବକ ବିଭୋର । ଏପରିକି, ଯେଉଁ ଡାକ୍ତରୀ ବିଦ୍ୟା ପଢ଼ିବାକୁ ଆଗେ ମେଧାବୀ ଛାତ୍ରଗଣଙ୍କ ମଧ୍ୟରେ ପ୍ରତିଯୋଗିତା ଚାଲୁଥିଲା, ଏବେ ସେମାନେ ତତ୍‌ପ୍ରତି ବୀତସ୍ପୃହ । ଅନେକଙ୍କ ଯୁକ୍ତି ଯେ ଯୁକ୍ତ ଦୁଇ ବିଜ୍ଞାନ ଶିକ୍ଷାପରେ ଜଣେ ଯାନ୍ତ୍ରିକ ବିଦ୍ୟା ପଢ଼ିଲେ ମାତ୍ର ଚାରିବର୍ଷ ଶିକ୍ଷା ପରେ ଇଞ୍ଜିନିୟର ହୋଇ ବାହାରିବ ଏବଂ ଯଦି ଶ୍ରେଷ୍ଠ ପନ୍ଦର, କୋଡ଼ିଏଙ୍କ ମଧ୍ୟରେ ସ୍ଥାନ ରହିଲା ତେବେ ଭାରତର ବଡ଼ କମ୍ପାନୀ ବା ବିଦେଶୀ କମ୍ପାନୀ ମହାବିଦ୍ୟାଳୟ ପରିସର ମଧ୍ୟରୁ ମନୋନୀତ କରି ସଙ୍ଗେ ସଙ୍ଗେ ଚାକିରିରେ ନିଯୁକ୍ତି ଦେବେ ଏବଂ ବୟସ ପଚାଶ ବର୍ଷ ଅତିକ୍ରମ କଲାବେଳକୁ ଲକ୍ଷପତି । ଏତଦ୍ୱାରା ବିବାହ ବଜାରରେ ଲାଭ କାହିଁରେ କ'ଣ । ସୁନ୍ଦରୀ ଝିଅ ସହ ଲକ୍ଷ, କୋଟିପତି ପ୍ରତିଯୋଗିତା କରି ଧାଇଁବେ ଜୋଇଁ ରୂପେ ବରଣ କରିବାକୁ । ଡାକ୍ତରୀ ବା ଅନ୍ୟ ଚାକିରିରେ ସେମିତି ପଇସା କାହିଁ ? ଡାକ୍ତରୀ ପାଠ ପଢୁପଢୁ ଜଣକର ଅର୍ଦ୍ଧ ବୟସ ଖସିଯାଇଥିବ । ଯୁକ୍ତ ଦୁଇ ପରେ ପ୍ରବଳ ପ୍ରତିଯୋଗିତାରେ ମନୋନୀତ ହେଲେ ପାଞ୍ଚବର୍ଷ ଏମ୍.ବି.ବି.ଏସ୍, ଗୋଟିଏ ବର୍ଷ ହାଉସ ସର୍ଜନ ହେବା ପରେ କୌଣସି ଏକ ବିଷୟରେ ବିଶାରଦ ନହେଲେ ଡାକ୍ତରର କାଟ୍‌ତି ନାହିଁ । ଏବେ ପୁଣି ସୁପର ଏକ୍ସପାର୍ଟ କଥା ଉଠିଲାଣି । ସରକାର ଆଇନ କଲେଣି ଗାଁ ଗହଳରେ ସରକାରୀ ନିର୍ଦ୍ଧାରିତ ସମୟ ଚାକିରି ନକଲେ ଡିଗ୍ରୀ ଦେବେ ନାହିଁ, ପୁଣି ପଦୋନ୍ନତି ଆଦି ପାଇଁ କେତେ କଟକଣା । କ୍ଲିନିକ୍ କରି ଦିନରାତି ବସିଲେ ବି ଡଲାର ବା ଇରୋ ଟଙ୍କାକୁ ଟପିବା ସମ୍ଭବ ନୁହେଁ । ବିବାହ ବଜାରରେ ଇଞ୍ଜିନିୟରଙ୍କ ଅପେକ୍ଷା ଡାକ୍ତରଙ୍କ ଭାଉ କମ୍, କାରଣ ଡାକ୍ତରଙ୍କ ଖଟଣି ବେଶି, ପଇସା କମ୍ । ଥରେ ଜଣେ ଡାକ୍ତରଙ୍କ ସ୍ତ୍ରୀ ମୋତେ କହୁଥିଲେ ଯେ ସେ ଭୁଲ୍‌ରେ ଡାକ୍ତର ଜୋଇଁ କରିବେ ନାହିଁ । ଏହା ଥିଲା ତାଙ୍କ ନିଜ ଅଭିଜ୍ଞତା । ଡାକ୍ତରବାବୁ କେତେବେଳେ ଘରେ ରହନ୍ତି ନାହିଁ, ସବୁବେଳେ ରୋଗୀ ସେବାରେ ବ୍ୟସ୍ତ । ଏହାଛଡ଼ା

ସମସ୍ତ ଉଦ୍ୟମ ସତ୍ତ୍ୱେ ଯଦି କୌଣସି ସାଙ୍ଘାତିକ ରୋଗୀର ମୃତ୍ୟୁ ଘଟେ, ଡାକ୍ତର ଭାଗ୍ୟରେ ଉତ୍ତମ, ମଧ୍ୟମ ବି ଥାଏ। ଏପରିସ୍ଥଳେ ମେଧାବୀ ଛାତ୍ରଗଣ ଡାକ୍ତରୀ ବିଦ୍ୟାପ୍ରତି ଆକୃଷ୍ଟ ହେବେ କାହିଁକି ? ଓ.ଏ.ଏସ୍, ଅଧ୍ୟାପକ ଆଦି ଚାକିରି ବିଷୟରେ ନକହିବା ଭଲ। ସେମାନଙ୍କ କେତେ ଯେ ମୁରବୀ କହିବା ମୁଷ୍କିଲ। ଏସବୁ କାରଣ ଯୋଗୁଁ ଯାନ୍ତ୍ରିକ ବିଦ୍ୟାର ଚାହିଦା ବଢ଼ିଛି। ଚାହିଦା ବଢ଼ିବା ଯୋଗୁଁ ଏ ବିଦ୍ୟା ଏବେ ଲାଭଜନକ ବ୍ୟବସାୟରେ ପରିଣତ ହୋଇଛି। ଅନ୍ୟପକ୍ଷରେ, ଏ ପାଠପଢ଼ା ପାଇଁ ଋଣକରି ଲକ୍ଷ ଲକ୍ଷ ଟଙ୍କା ଖର୍ଚ୍ଚ କରିବାକୁ ବାପା ମା ପଶ୍ଚାତ୍‌ପାଦ ନୁହନ୍ତି। ସମାଜର ବ୍ୟକ୍ତିକୁ ଚୁମ୍ବକ ଭଳି ଅର୍ଥର ଆକର୍ଷଣ ଏତେଦୂର କଲାଣି ଯେ ତାର ସବୁ ହିସାବ କିତାବ ଅର୍ଥ ମାଧ୍ୟମରେ। ଅର୍ଥ ହିଁ ତାର ଜୀବନର ସର୍ବସ୍ୱ। ଏଣେ ଯେ ପାରିବାରିକ ଓ ସାମାଜିକ ଜୀବନ ଭୁଷୁଡ଼ି ପଡିଲାଣି, ତତ୍ ପ୍ରତି ଲକ୍ଷ୍ୟ ନାହିଁ। ମଣିଷ ଠାରୁ ମାନବିକତା ଦୂରେଇ ଯାଉଛି ଏବଂ ଅନ୍ତିମ ଜୀବନରେ ଏ ଅର୍ଥ ଲାଳସାର ସେ ହିଁ ଶରବ୍ୟ ହେବ ସେ ଦୂରଦୃଷ୍ଟି ତା'ର ନାହିଁ। ଆଜି ଶତ ସହସ୍ର ବୃଦ୍ଧ ପିତାମାତା ପରିବାରରେ ଅନାଦୃତ। ଏଣେ ବାର୍ଦ୍ଧକ୍ୟ-ବ୍ୟାଧି ଜର୍ଜରିତ, ତେଣେ କ୍ଷୁଧା-ତୃଷା ନିବାରଣ ପାଇଁ ମୁଠାଏ ଅନ୍ନ ବା ଟୋପାଏ ଜଳ ଦେବାପାଇଁ ନିକଟରେ କେହି ନାହିଁ। ସେମାନେ ସମ୍ପୂର୍ଣ୍ଣ ନିରାଶ୍ରୟ। ବିଜ୍ଞାନର ଜୟଯାତ୍ରା ମଣିଷକୁ କିପରି ନିଃସଙ୍ଗ କରୁଛି ଏହା ଏକ ଦୃଷ୍ଟାନ୍ତ ମାତ୍ର। ଏବେ ଶୈଶବାବସ୍ଥାରୁ ମଣିଷ ଖାପ୍‌ଛଡ଼ା ହୋଇ ପଡୁଛି। ସେ ହିଂସ୍ର ପ୍ରକୃତିପ୍ରଣୋଦିତ ହୋଇ ଯେ କୌଣସି ଅମାନୁଷିକ ଆଚରଣ ପ୍ରଦର୍ଶନ କରିବାପାଇଁ କୁଣ୍ଠିତ ନୁହେଁ। ଏହା ଫଳରେ ପାରିବାରିକ ତଥା ସାମାଜିକ ଜୀବନ ଦୁର୍ବିସହ ହୋଇଉଠିଛି। ଦୟା, କ୍ଷମା, ପ୍ରେମ, ଅହିଂସା, ଉଦାରତା, ଆତ୍ମତ୍ୟାଗ ଆଦି ନୈସର୍ଗିକ ଗୁଣ ଗୁଡ଼ିକରୁ ସେ ଦୂରେଇ ଯାଇଛି। ବୈଜ୍ଞାନିକ ଆଇନଷ୍ଟାଇନ୍ ମଣିଷର ପ୍ରକୃତିକୁ ଦୁଇ ଭାଗରେ ବିଭକ୍ତ କରିଛନ୍ତି। ତା ହେଲା ପଶୁତ୍ୱ ଓ ବିଚାରଶକ୍ତି। ଯୁବ ସମାଜର ବିଚାର ଶକ୍ତିର କ୍ରମ ହ୍ରାସ ହେବା ସହ ପଶୁତ୍ୱ ଶକ୍ତିର ଅଭିବୃଦ୍ଧି ଘଟୁଛି; କାରଣ ଆମର ଶିକ୍ଷା ବ୍ୟବସ୍ଥାରେ ଶିଶୁର ବିଚାରଶକ୍ତିର ବିକାଶ କରିବାପାଇଁ ବ୍ୟବସ୍ଥା କରାଯାଉ ନାହିଁ। ଦାର୍ଶନିକ ବାଟ୍ରେଣ୍ଡ ରାସେଲ କହନ୍ତି, ଜ୍ଞାନର ବୃଦ୍ଧି ସହ ପ୍ରଜ୍ଞାର ବିକାଶ ନ ଘଟିଲେ, ଜ୍ଞାନର ବିକାଶ ହିଁ ମଣିଷର ଦୁଃଖର କାରଣ ହେବ। ଆମେ ସେଇ ଆଡକୁ ହିଁ ଗତି କରୁଛୁ। ପ୍ରଯୁକ୍ତି ବିଦ୍ୟାର ସଭ୍ୟତା ବିଜ୍ଞାନର ବିପରୀତମୁଖୀ ହେବା ପାଇଁ ଖୋରାକ ଦେଉଛି ଫଳରେ ମଣିଷର ମାନବିକ ଗୁଣ ଗୁଡ଼ିକର ବିକାଶ ଲାଭ କରିପାରୁନାହିଁ। ଉଲ୍ଲିଖିତ ଯୁକ୍ତି ପାଠକରି ପାଠକେ ବିଜ୍ଞାନର ଅବଦାନକୁ ବିରୋଧ କରାଯାଉଛି ବୋଲି ଭାବିବା ଅନୁଚିତ। ବିଜ୍ଞାନର ଓ ପ୍ରଯୁକ୍ତି ବିଦ୍ୟାର ଅଗ୍ରଗତି ଆମକୁ ବହୁ ସୁଖସ୍ୱାଚ୍ଛନ୍ଦ୍ୟ ଆଣି ଦେଇଛି। ବିଜ୍ଞାନର ପ୍ରଗତି ସହ ମଣିଷର ବିଚାରଶକ୍ତିର କିପରି ଅଭିବୃଦ୍ଧି ହେବ ତାହା ଲକ୍ଷ୍ୟକରି ପାଠ୍ୟକ୍ରମର ପୁନଃବିନ୍ୟାସ କରାଯିବା ଉପରେ ପ୍ରାଧାନ୍ୟ ଦେବା ଉଚିତ। ବିଜ୍ଞାନ ଛାତ୍ର 'କଳା'କୁ ଯେପରି ସମ୍ପୂର୍ଣ୍ଣ ଉପେକ୍ଷା ନକରେ ତଦନୁଯାୟୀ ବିଜ୍ଞାନ ଓ କଳାର ସମନ୍ୱୟରେ ପାଠ୍ୟକ୍ରମ ପ୍ରସ୍ତୁତ କରାଯାଉ। ଭାରତୀୟ ପ୍ରଯୁକ୍ତି ବିଦ୍ୟା ଅନୁଷ୍ଠାନ (ଆଇ.ଆଇ.ଟି) ଓ ଯୁଗ୍ମ ପ୍ରବେଶିକା ପରୀକ୍ଷା

(ଜେ.ଇ.ଇ) ଉଭୟର ପ୍ରବେଶିକା ପରୀକ୍ଷାରେ ପରୀକ୍ଷାର୍ଥୀର ପସନ୍ଦ ଅନୁଯାୟୀ ଏକ ଭାରତୀୟ ଭାଷା ଉପରେ ପରୀକ୍ଷା କରାଯିବା ଦରକାର । ଫଳରେ ପିଲା ଭାରତୀୟ ଭାଷା, ସଂସ୍କୃତି ଓ ପରମ୍ପରା ସହ ପରିଚିତ ହେବା ସହ ବିଜ୍ଞାନ ଓ କାରିଗରୀ ବିଦ୍ୟାରେ ପାରଙ୍ଗମତା ହାସଲ କଲେ ମଧ୍ୟ ଭାରତୀୟ ଜାତୀୟ ସ୍ରୋତରୁ ବିଛିନ୍ନ ହେବନାହିଁ । ଶିକ୍ଷାର ଲକ୍ଷ୍ୟ ଏକ ସଂସ୍କୃତି ସମ୍ପନ୍ନ ମଣିଷ ଓ ସମାଜ ଗଢ଼ିବା । ଅର୍ଥ ଉପାର୍ଜନକ୍ଷମ ଏକ ମେସିନ୍ ଗଢ଼ିବା ଶିକ୍ଷାର ଉଦ୍ଦେଶ୍ୟ ନୁହେଁ ।

ବିଂଶ ଶତାବ୍ଦୀର ଶେଷ ଦୁଇ ଦଶନ୍ଧିରୁ ଭାରତୀୟ ଯୁବ ଶକ୍ତି ଅର୍ଥୋପାର୍ଜନର ଲକ୍ଷ୍ୟରେ ଯେପରି କ୍ଷିପ୍ରଗତିରେ ଆଗେଇ ଚାଲିଛି, ତାହା ଦେଶ ତଥା ଭବିଷ୍ୟତ ସମାଜ ପ୍ରତି ଶୁଭଙ୍କର ନୁହେଁ । ଏଣୁ ଦେଶର ହିତ ତଥା ସମାଜ କଲ୍ୟାଣ ଦୃଷ୍ଟିରୁ ଶିକ୍ଷା କ୍ଷେତ୍ରରେ ଏକ ବୈପ୍ଳବିକ ପରିବର୍ତ୍ତନ ଅଣାଯିବା ବିଧେୟ । ଫଳରେ ବିଜ୍ଞାନ ତଥା ପ୍ରଯୁକ୍ତି ବିଦ୍ୟାର ଅଗ୍ରଗତି ସହ ଦେଶ, ସମାଜ ଓ ପରିବାର ସମ୍ଭାବ୍ୟ ଧ୍ୱଂସମୁଖରୁ ରକ୍ଷାପାଇ ପାରିବ ।



(ସମାଜ, ଜାନୁୟାରୀ ୧୪, ୨୦୦୩ ରେ ପ୍ରକାଶିତ)

# ଶିକ୍ଷା ହିଁ ଜନସଂଖ୍ୟା ବୃଦ୍ଧିକୁ ନିୟନ୍ତ୍ରଣ କରିପାରିବ

ଭାରତରେ ପ୍ରତି ଦଶବର୍ଷରେ ଜନସୁମାରି ହେଉଛି। ଜନସଂଖ୍ୟା ବୃଦ୍ଧିର କୌଣସି ପ୍ରଭାବ ସାଧାରଣ ଜନତା ଉପରେ ପଡ଼େନା। ଯଦି ଜନତା ଉପରେ ଏହାର ପ୍ରଭାବ ପଡୁଥାନ୍ତା ତେବେ ଏଇ ଅର୍ଦ୍ଧଶତାବ୍ଦୀ ମଧ୍ୟରେ ୩୬୧ ନିୟୁତ ସଂଖ୍ୟା ୧୦୦ କୋଟିକୁ ଟପି ନଥାନ୍ତା। ଜନସଂଖ୍ୟାକୁ ନିୟନ୍ତ୍ରଣ କରିବା ପାଇଁ ସରକାରଙ୍କ ସବୁ ଯୋଜନା ବିଫଳ ହୋଇଛି କହିଲେ ବୋଧହୁଏ ଅତ୍ୟୁକ୍ତି ହେବନାହିଁ। ପୃଥିବୀ ଜନସଂଖ୍ୟାର ଏକ-ଷଷ୍ଠାଂଶ କେବଳ ଭାରତରେ। ଜନସଂଖ୍ୟା ତଥା ନିରକ୍ଷରତା ବୃଦ୍ଧିପାଇଁ ବିଶ୍ୱସ୍ତରରେ ଯଦି ପଦକ ଦିଆଯାଏ, ତେବେ ଆମେ ସ୍ୱର୍ଣ୍ଣପଦକ ପାଇ ନିଶ୍ଚୟ ଗୌରବାନ୍ୱିତ ହେବା। କେନ୍ଦ୍ର ସରକାର ଗୋଟିଏ ଜାତୀୟ 'ଜନସଂଖ୍ୟା ଆୟୋଗ' ଗଢ଼ିଛନ୍ତି। ଏଇ ଆୟୋଗର ସଭ୍ୟସଂଖ୍ୟା ୧୪୦ ଜଣ। ସେମାନେ ରାଜଧାନୀ ଦିଲ୍ଲୀରେ ଶୀତତାପ ନିୟନ୍ତ୍ରିତ କୋଠାରେ ବସି ଦେଶର ଜନସଂଖ୍ୟା ନିୟନ୍ତ୍ରଣ ପାଇଁ ବିଚାର ବିମର୍ଶ କରନ୍ତି। ବର୍ଷରେ ଅନେକ ବାର ବୈଠକ ବସେ। ସେମାନଙ୍କ ଗସ୍ତଖର୍ଚ୍ଚ ଓ ଭତ୍ତା ବାବଦରେ ସରକାରୀ ରାଜକୋଷରୁ ବିପୁଳ ଅର୍ଥ ବ୍ୟୟ ହୁଏ। ଏହି ଆୟୋଗ ଏପରି କାମ କରୁଛି ଯେ ଆମ ଦେଶର ଜନସଂଖ୍ୟା ପ୍ରତିବର୍ଷ ଶତକଡ଼ା ଦୁଇ ଅର୍ଥାତ୍ ବର୍ଷକୁ ଦେଶରେ ଉଣେଇଶ ନିୟୁତ ଲୋକସଂଖ୍ୟା ବଢ଼ିବାରେ ଲାଗିଛି।

ଭାରତର 'ପରିବାର ଯୋଜନା ସମିତି'ର ସଭାପତି ଶ୍ରୀମତୀ ନୀନାପୁରୀ କହନ୍ତି, 'ପରିବାର ଜନତାର, ଜନସଂଖ୍ୟା ଦେଶର'। ଏହା ବାସ୍ତବ ଓ ଉତ୍ତମ କଥାଟିଏ। ସରକାରଙ୍କ ପରିବାର କଲ୍ୟାଣ ବିଭାଗ ତରଫରୁ ବାଟରେ ଘାଟରେ ସାଇନ୍‌ବୋର୍ଡ ମରାଯାଇ ଲେଖାଯାଇଛି ଏବଂ ସଭାସମିତିରେ ସ୍ଲୋଗାନ ଦିଆଯାଉଛି ତଥା ଗଣମାଧ୍ୟମରେ ପ୍ରଚାର କରାଯାଉଛି - 'ଆମେ ଦୁଇ, ଆମର ଦୁଇ', 'ଛୋଟ ପରିବାର ସୁଖୀ ପରିବାର', 'ଗୋଟିଏ ସନ୍ତାନ ଭଲ'- ଏହାର ପ୍ରଭାବ ସାଧାରଣ ଜନତା ଉପରେ ପଡୁଛି କି? ଦେଶର ଚାଳିଶ ଜଣ ନିରକ୍ଷରଙ୍କ ଆଗରେ ଏସବୁ କାଲ ଆଗରେ ମୂଳା ଚୋବାଇବା ପରି। ଆମ ଦେଶ ନେତା ତଥା ତଥାକଥିତ ପଦାଧିକାରୀଙ୍କ ଏ ଏକ ମିଥ୍ ଯେ ଗରିବ ଲୋକେ ଅଧିକ ସନ୍ତାନ ଚାହାନ୍ତି। ଏହା ପ୍ରକୃତ କଥା କି? କେବେ ନୁହେଁ। ଗରିବ ଲୋକ ବି ବଡ଼ ପରିବାର ବୋଝ ମୁଣ୍ଡାଇବାକୁ ଚାହେଁନା। ସେ ବାସ୍ତବରେ ଏ ଦିଗରେ ସମ୍ପୂର୍ଣ୍ଣ ଅଜ୍ଞ। ସେ ଗାଁ ମାନଙ୍କର ମୁଖିଆ ଲୋକ ବା ମଧ୍ୟବିତ୍ତ ପରିବାର ଲୋକଙ୍କ ଠାରୁ ଜନ୍ମ ନିୟନ୍ତ୍ରଣ ପାଇଁ ବ୍ୟବହୃତ ଔଷଧ ଆଦି ଓ ଅସ୍ତ୍ରୋପଚାର ବିରୋଧରେ କେତେକ କଥାଶୁଣି ସେ ଦିଗରେ ଆଗେଇବାକୁ ଭୟ କରେ।

ଅସ୍ତ୍ରୋପଚାରରେ ଅମୁକ ଘର ସ୍ତ୍ରୀ ଲୋକଟି ମରିଗଲା, ଅମୁକ ସ୍ତ୍ରୀ ଲୋକଟି ଅକର୍ମଣ୍ୟ ହୋଇଯାଇଛି ଇତ୍ୟାଦି ଇତ୍ୟାଦି । ଏ କଥା ପ୍ରତ୍ୟକ୍ଷ ବା ପରୋକ୍ଷ ଭାବରେ ସେମାନଙ୍କ ମୁଣ୍ଡରେ ପୂରାଇ ଦିଆଯାଉଛି । ଗରିବ ଘରର ପୁରୁଷ ଓ ସ୍ତ୍ରୀ ଦୁହେଁ ରୋଜଗାରିଆ ଏଣୁ ଜଣଙ୍କ ଅଘଟଣ ବା ସ୍ୱାସ୍ଥ୍ୟହାନି ଘଟିଲେ ପରିବାରର ଆୟ ଓ ଚଳଣିରେ ବ୍ୟାହତ ହେବ । ସେହି ଦୃଷ୍ଟିରୁ ସେମାନେ ପରିବାର ନିୟନ୍ତ୍ରଣ ଯୋଜନାକୁ କାର୍ଯ୍ୟକାରୀ କରିବାକୁ ଟୀତସ୍ପୃହ । ଏକରେ ସେମାନେ ନିରକ୍ଷର । ଏଣୁ ସେମାନଙ୍କ ମନରେ ସଚେତନତା ସୃଷ୍ଟି କରିବାକୁ ବାସ୍ତବ କ୍ଷେତ୍ରରେ ସରକାରଙ୍କ ତରଫରୁ ପଦକ୍ଷେପ ନିଆଯାଉଛି କି ?

ଜନସଂଖ୍ୟା ଅଭିବୃଦ୍ଧିରେ ଆମେ ଏବେ ଚୀନ ଦେଶଠାରୁ ବି ଆଗେଇବାକୁ ବସିଲୁଣି । ଗତ ଦୁଇ ଦଶନ୍ଧି ମଧ୍ୟରେ ଚୀନର ଜନସଂଖ୍ୟା ବୃଦ୍ଧିହାର ବାର୍ଷିକ ଶତକଡ଼ା ଏକରୁ ତଳକୁ ଖସି ଆସୁଥିବା ବେଳେ ଆମ ଦେଶର ଜନସଂଖ୍ୟା ବୃଦ୍ଧିହାର ବାର୍ଷିକ ଶତକଡ଼ା ଦୁଇକୁ ବୃଦ୍ଧି ଘଟୁଛି । ଅନ୍ୟ ଦିଗରେ ଚୀନର ବାର୍ଷିକ ଆର୍ଥିକ ଅଭିବୃଦ୍ଧି ହାର ଶତକଡ଼ା ଆଠରୁ ବାର ହେଲାବେଳକୁ ଆମ ଦେଶର ବାର୍ଷିକ ଆର୍ଥିକ ଅଭିବୃଦ୍ଧି ତିନରୁ ଏକକୁ ଖସୁଛି । ଚୀନ ଆର୍ଥିକ କ୍ଷେତ୍ରରେ ବିଶ୍ୱର ଅଧିକ ଶକ୍ତି ସମ୍ପନ୍ନ (Super Power) ହେବାକୁ ଗଲାଣି । ଏଠାରେ ଇଣ୍ଡୋନେସିଆର ଦୃଷ୍ଟାନ୍ତ ମଧ୍ୟ ଦିଆଯାଇପାରେ । ତୈଳଦର ବୃଦ୍ଧି ଯୋଗୁଁ ତୈଳ ସମୃଦ୍ଧ ଇଣ୍ଡୋନେସିଆର ଅଧିକ ଉପାର୍ଜିତ ଅର୍ଥକୁ ପ୍ରେସିଡେଣ୍ଟ ସୁହାର୍ତ୍ତୋ ଦେଶର ଶିକ୍ଷା ଓ ସ୍ୱାସ୍ଥ୍ୟର ଉନ୍ନତି ପାଇଁ ବିନିଯୋଗ କଲେ । ଫଳରେ ଦେଶର ସାକ୍ଷରତା ଶତକଡ଼ା ଅଶୀକୁ ଏବଂ ଦେଶର ଜନତାର ହାରାହାରି ଆୟୁ ସତୁରିକୁ ବୃଦ୍ଧି ପାଇଛି ।

ଆମ ଦେଶରେ କେରଳ, ତାମିଲନାଡୁ ଓ ଗୋଆ ରାଜ୍ୟରେ ସାକ୍ଷରତା ହାର ଅଧିକ ଯୋଗୁଁ ପରିବାର ନିୟନ୍ତ୍ରଣ ଯୋଜନା ସଫଳ ହୋଇପାରିଛି । ଏପରିକି କେରଳର ମୁସଲିମ ଗୋଷ୍ଠୀ ଓ ଗୋଆର ରୋମାନ୍ କ୍ୟାଥଲିକଙ୍କ ମଧ୍ୟରେ କ୍ଷୁଦ୍ର ପରିବାର ପ୍ରୟାସ ବଢ଼ିଛି । ସରକାରୀ ହିସାବରେ ଆମ ଦେଶର ସାକ୍ଷରତା ହାର ଶତକଡ଼ା ଷାଠିଏକୁ ବଢ଼ିଛି କିନ୍ତୁ ଏଥି ମଧ୍ୟରେ ବିହାର, ମଧ୍ୟପ୍ରଦେଶ, ରାଜସ୍ଥାନ ଓ ଉତ୍ତରପ୍ରଦେଶର ଶତକଡ଼ା ସାକ୍ଷରତା ହାର କୋଡ଼ିଏରୁ ତିରିଶ ମଧ୍ୟରେ ହିଁ ସୀମିତ ଅଟେ । ଏପରି ସ୍ଥଳେ, ପରିବାର କଲ୍ୟାଣ ଯୋଜନା କାର୍ଯ୍ୟକାରୀ ହେବ କିପରି ? କେବଳ ସାକ୍ଷରତା ଅଭିବୃଦ୍ଧି ଓ ଅଧିକ ସ୍ୱାସ୍ଥ୍ୟସେବା କାର୍ଯ୍ୟକ୍ରମ ହିଁ ଦେଶର ଜନସଂଖ୍ୟାକୁ ନିୟନ୍ତ୍ରଣ କରିବାକୁ ସହାୟକ ହେବ ।

(ସମାଜ, ଅପ୍ରେଲ ୨୮, ୨୦୦୧ରେ ପ୍ରକାଶିତ)

# ଭାଷା ହିଁ ଜୀବନ ଧାରଣର ମାନ ନିର୍ଦ୍ଧାୟକ

ଭାଷା ମଣିଷର କେବଳ ମନର ଭାବ ପ୍ରକାଶ କରିବାରେ ସହାୟକ ହୁଏ ନାହିଁ; ଏହା ତା'ର ଜୀବନଧାରଣ ମାନ ମଧ ନିର୍ଣ୍ଣୟ କରିଥାଏ । ଇଂରେଜ ବେପାରୀମାନେ ଏ ଦେଶକୁ ଆସିଥିଲେ ବଣିଜ କରିବାକୁ । ଆମ ଲୋକେ ଇଂରେଜ କମ୍ପାନୀ ଅଧୀନରେ କାମ କଲେ । କମ୍ପାନୀର ଅନୁକମ୍ପା ପାଇବା ଆଶାରେ ସେମାନେ ଇଂରାଜୀ ଭାଷା ଶିଖିଲେ । ଶେଷରେ ଆମ ଲୋକଙ୍କ ସାହାଯ୍ୟରେ ହିଁ ଇଂରେଜମାନେ ଏ ଦେଶରେ ଶାସନ ଜାହିର କଲେ । ଇଂରେଜମାନେ ଆମ ଦେଶରେ ଦୁଇଶହ ବର୍ଷ ଶାସନ କଲେ; କିନ୍ତୁ ସେମାନଙ୍କୁ ଶାସନରୁ ହଟାଇବାକୁ ଆମକୁ ଏକ ଶତାବ୍ଦୀଧରି ସଂଗ୍ରାମ କରିବାକୁ ପଡ଼ିଥିଲା; କିନ୍ତୁ ଇଂରେଜୀ ଭାଷାର ସାମ୍ରାଜ୍ୟ ଏପରି ବିସ୍ତାର କରିଦେଲେ ଯେ ତାକୁ ହଟାଇବା ସହଜ ସାଧ ହେଲା ନାହିଁ । ଅନ୍ୟପକ୍ଷରେ, ଇଂରାଜୀ ଭାଷା ହିଁ ଭାରତୀୟଙ୍କ ଉଚ୍ଚ ମାନର ଜୀବନଧାରଣ ପାଇଁ ଏକ ମାଧମରେ ପରିଗଣିତ ହୋଇଛି । ପୁନଶ୍ଚ, କମ୍ପ୍ୟୁଟର ତଥା ପ୍ରଯୁକ୍ତିବିଦ୍ୟାର ଅଭୂତପୂର୍ବ ପ୍ରଗତି ଫଳରେ ଶିକ୍ଷା ଓ ଚାକିରି ପାଇଁ ଇଂରାଜୀ ଭାଷା ଶିକ୍ଷା ଅପରିହାର୍ଯ୍ୟ ହୋଇପଡ଼ିଛି । ଦିନଥିଲା, ବ୍ରିଟିଶ ସାମ୍ରାଜ୍ୟରେ ସୂର୍ଯ୍ୟ କେବେ ଅସ୍ତ ହେଉ ନଥିଲେ । ଏଣୁ ସାରା ପୃଥିବୀରେ ଇଂରେଜ ଜାତି ସେମାନଙ୍କ ଭାଷା ଓ ସଂସ୍କୃତିକୁ ବିସ୍ତାର କରିବାରେ ସକ୍ଷମ ହୋଇଥିଲେ । ସ୍ୱାଧୀନ ଚେତା ମଣିଷର ସଂଗ୍ରାମ ଫଳରେ କ୍ରମେ ବ୍ରିଟିଶ ସାମ୍ରାଜ୍ୟର ଅବଲୁପ୍ତ ହେଲା ଏବଂ ଅନ୍ୟ ଜାତିର ଅଭ୍ୟୁଦୟ ଘଟିଲା । ଏହି ଅର୍ଦ୍ଧଶତାବ୍ଦୀ ମଧରେ ଆନ୍ତର୍ଜାତିକ କ୍ଷେତ୍ରରେ ସୋଭିଏତ୍ ୟୁନିୟନର ଉତ୍ଥାନ ହୋଇ ପତନ ବି ଘଟିଲା । ଯୁକ୍ତରାଷ୍ଟ୍ର ଆମେରିକା ପରେ ଏବେ ପ୍ରତ୍ୟେକ କ୍ଷେତ୍ରରେ ଚୀନ୍ ଏକ ଶକ୍ତିଶାଳୀ ରାଷ୍ଟ୍ର ରୂପେ ଦେଖାଦେଇଛି । ବାଣିଜ୍ୟ କ୍ଷେତ୍ରରେ ଚୀନ୍ ଆନ୍ତର୍ଜାତିକ ବଜାରକୁ ଦଖଲ କରିବାକୁ ଉଦ୍ୟମ ଅବ୍ୟାହତ ରଖିଛି । ଭାରତ ମୁଖ୍ୟ ସହର ଗୁଡ଼ିକରେ ଚୀନ ପ୍ରସ୍ତୁତ ନିତ୍ୟ ବ୍ୟବହାର୍ଯ୍ୟ ପଦାର୍ଥ ସୁଲଭ ଦରରେ ମିଳିଲାଣି । ଶସ୍ତାଦରର ଜିନିଷ ଖାଉଟି ମାନଙ୍କୁ ବିଶେଷଭାବେ ଆକର୍ଷଣ କଲାଣି । ଏଣୁ ଭାରତବାସୀଙ୍କୁ ଚାକିରି, ବେପାର ଓ ରୋଜଗାର ପାଇଁ ଏବେ ବାଧ ହୋଇ ଚୀନ ଭାଷା ଶିକ୍ଷା କରିବାକୁ ହେବ । ଜୀବନ ଧାରଣ ସହ ଭାଷା ସମ୍ପର୍କ ଏତେ ନିବିଡ଼ ଯେ ମଣିଷ କେବଳ ଗୋଟିଏ ଭାଷାକୁ ଆପଣେଇ ଉନ୍ନତ ମାନର ଜୀବନ ଯାପନ କରିବା ସମ୍ଭବ ନୁହେଁ । ଦିନ ଆସିବ, ଆମେ ଜର୍ମାନ, ସ୍ପେନୀୟ ଓ ଆରବୀୟ ପ୍ରଭୃତି ଭାଷା ଶିଖିବାକୁ ବାଧ ହେବା । ଆନ୍ତର୍ଜାତିକ କ୍ଷେତ୍ରରେ ଯେଉଁ ଦେଶ ତାର ପ୍ରାଧାନ୍ୟ ପ୍ରତିପାଦନ କରିବ, ପୃଥିବୀବାସୀ କର୍ମସଂସ୍ଥାନ ଦୃଷ୍ଟିରୁ ସେ ଦେଶର ଭାଷା ଶିକ୍ଷା କରିବାକୁ ବାଧ

ହେବେ । ଏଣୁ କୌଣସି ନିର୍ଦ୍ଦିଷ୍ଟ ଭାଷାକୁ ଆଧାର କରି ପରସ୍ପର ମଧ୍ୟରେ ଦ୍ୱନ୍ଦ୍ୱ କରିବା ନିରର୍ଥକ । ଏହା ବହୁକ୍ଷେତ୍ରରେ ପ୍ରମାଣିତ । ଚୀନ ଦେଶରେ ଏକ ଲୋକକଥା ଅଛି, 'ବିରାଡ଼ି ମୂଷାଧରି ପାରୁଥିବା ପର୍ଯ୍ୟନ୍ତ ତା'ର ରଙ୍ଗ ଉପରେ ପ୍ରଶ୍ନ କରିବା କି ଆବଶ୍ୟକ ।' ଅର୍ଥାତ୍ ଯେଉଁ ଭାଷାଦ୍ୱାରା ମଣିଷ ରୋଜଗାରକ୍ଷମ ବା ଉନ୍ନତମାନର ଜୀବନଯାପନ ପାଇଁ ସକ୍ଷମ, ସେଇ ଭାଷାକୁ ନେଇ ଦ୍ୱନ୍ଦ୍ୱାତ୍ମକ ମନୋଭାବ ସୃଷ୍ଟିକରିବା ଅର୍ଥହୀନ ।

ଏଇ ଗତ ଦୁଇ ଦଶନ୍ଧି ମଧ୍ୟରେ ଆମ ଦେଶର ବୈଜ୍ଞାନିକ, ଇଞ୍ଜିନିୟର ଓ ଡାକ୍ତର ସହସ୍ରାଧିକ ସଂଖ୍ୟାରେ ଯୁକ୍ତରାଷ୍ଟ୍ର ଆମେରିକା ଓ ଅନ୍ୟାନ୍ୟ ଶିଳ୍ପୋନ୍ନତ ରାଷ୍ଟ୍ରକୁ ଗଲେଣି ଅର୍ଥୋପାର୍ଜନ କରି ଉନ୍ନତମାନର ଜୀବନଯାପନ ଲକ୍ଷ୍ୟରେ । ସେମାନେ ଏ ଦେଶର ପରମ୍ପରା ଓ ସଂସ୍କୃତିକୁ ଛାଡ଼ି ସେଇ ଦେଶର ସଂସ୍କୃତି ଓ ଚାଲିଚଳଣକୁ ସାଦରେ ଗ୍ରହଣ କଲେଣି । ପୁଣି, ଯୁକ୍ତରାଷ୍ଟ୍ର ଆମେରିକା ଓ ଇଂଲଣ୍ଡରେ ଶିକ୍ଷକମାନଙ୍କ ଅଭାବ ପରିଦୃଷ୍ଟରୁ ଏବେ ଭାରତବର୍ଷରୁ ଶିକ୍ଷକ ନେବାପାଇଁ ସ୍ଥିର କରିଛନ୍ତି । ଏଣୁ ଭାଷା, ସଂସ୍କୃତି ତଥା ବେଶଭୂଷା ଓ ଚାଲିଚଲଣର ଆଦାନ ପ୍ରଦାନକୁ ରୋକିବା ସମ୍ଭବ ନୁହେଁ । ଆମେ ନ ଚାହିଁଲେ ମଧ୍ୟ ସାରା ବିଶ୍ୱ ଏକ ଗ୍ରାମ ଓ ଏକ ପରିବାରରେ ସ୍ୱତଃ ପରିଣତ ହେବ । ଏହାର ଗତିକୁ କେହି ରୋକି ପାରିବେ ନାହିଁ ।

ଜୀବନ ସଦୃଶ ଭାଷାକୁ କୌଣସି ସୀମା ବା ସମ୍ବିଧାନ ମଧ୍ୟରେ ଆବଦ୍ଧ ରଖିବା ସମ୍ଭବ ନୁହେଁ । ଭାଷା ଗତିଶୀଳ ବା ଅବାରିତ ଗତିରେ ପ୍ରସାରିତ ହେଉଥିବ, ଭୌଗଳିକ ପରିସୀମାକୁ ଅତିକ୍ରମ କରି । ଭାଷା ସର୍ବଦା ମଣିଷକୁ ଅନ୍ୟ ଆଗରେ ପରିଚୟ କରିବାରେ ତଥା ପରିପୋଷଣରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥାଏ । ବ୍ୟକ୍ତିର ଜୀବନ, ସ୍ଥିତି ଓ ସ୍ଥିରତା ତଥା ସାଂସ୍କୃତିକ ବନ୍ଧନ ପାଇଁ ଏହା ଏକ ବଳିଷ୍ଠ ଆଧାର । ଏକ ବନ୍ଧନ ଓ ଆତ୍ମ ପରିଚୟକୁ ଛିନ୍ନ କରି ନୂତନ ବନ୍ଧନ ଓ ପରିଚୟ ସୃଷ୍ଟି କରିବାରେ ଭାଷା ପ୍ରମୁଖ ଭୂମିକା ଗ୍ରହଣ କରିଥାଏ ।



(ସମାଜ, ମେ ୨୩, ୨୦୦୧ ରେ ପ୍ରକାଶିତ)

# ଇଂରାଜୀ ହଟାଅ

ଆମ ଦେଶର ସ୍ୱାଧୀନତା ଆନ୍ଦୋଳନ ବେଳେ ଦେଶବାସୀଙ୍କ ସ୍ଲୋଗାନ ଥିଲା, 'ଇଂରାଜୀ ହଟାଅ, ଇଂରାଜୀ ହଟାଅ'। ଆନ୍ଦୋଳନ ଫଳରେ ଇଂରେଜ ସିନା ହଟିଗଲେ କିନ୍ତୁ ଇଂରାଜୀ ଚେର ଏ ଦେଶ ମାଟିରେ ଏପରି ଦୃଢ଼ଭାବେ ମାଡି ଯାଇଥିଲା ଯେ ତାକୁ ହଟାଇବା ସହଜ ହେଲାନାହିଁ। ବହୁବର୍ଷ ଧରି ଏ ଦେଶ ସାମନ୍ତବାଦୀଙ୍କ ଶାସନାଧୀନ ଥିଲା। ଏହି ଇଂରାଜୀ ଭାଷା ହିଁ ସେଇ ସାମନ୍ତବାଦୀ ଗୋଷ୍ଠୀଙ୍କୁ ନିଜର ସ୍ୱାତନ୍ତ୍ର୍ୟ ରକ୍ଷା କରିବା ତଥା ସାଧାରଣ ଜନତା ଉପରେ ସେମାନଙ୍କ ପ୍ରଭାବ ଜାହିର କରିବାକୁ ବିଶେଷ ଭାବେ ସାହାଯ୍ୟ କଲା।

ଇଂରାଜୀ ଭାଷା ସହ ସାମାଜିକ ପ୍ରତିଷ୍ଠା, କ୍ଷମତା ହାସଲ ତଥା ଧନ ଉପାର୍ଜ୍ଜନର ସମ୍ବନ୍ଧ ରହିଛି। ଏଣୁ ଇଂରାଜୀ ଭାଷାକୁ ମାଧମ କରି ପରାଧୀନ ଭାରତର ଉଚ୍ଚଶ୍ରେଣୀ ଓ ସ୍ୱାଧୀନ ଭାରତର ଉଚ୍ଚ ଶ୍ରେଣୀ ମଧ୍ୟରେ କୌଣସି ପାର୍ଥକ୍ୟ ଦେଖାଯାଏ ନାହିଁ। ଏବେ ଆମ ଦେଶରେ ସାଧାରଣ ଜନତାଙ୍କ ମଧ୍ୟରେ ଉଚ୍ଚ ଶ୍ରେଣୀ ତଥା ସାମନ୍ତବାଦୀ ଗୋଷ୍ଠୀଙ୍କ ଅନ୍ତର୍ଭୁକ୍ତ ହେବା ଏବଂ ସାମାଜିକ ପ୍ରତିଷ୍ଠା ବଢ଼ାଇବା ପାଇଁ ପ୍ରତିଯୋଗିତା ଲାଗିଛି। ନିମ୍ନ ବର୍ଗରୁ ଉଚ୍ଚବର୍ଗକୁ ଉଠିବା ପାଇଁ ଇଂରାଜୀ ଭାଷାକୁ ହିଁ ଏକ ମୁଖ୍ୟ ମାଧମ ବୋଲି ବିଚାର କରାଯାଉଛି। ପୁନଶ୍ଚ, ସ୍ୱାଧୀନ ଭାରତରେ ଯେଉଁ ବ୍ୟକ୍ତି ବିଶେଷ ଦେଶର ଶାସକ ହେଲେ, ସେମାନେ ଭାରତୀୟ ହୋଇଥିଲେ ବି ଇଂରାଜୀ ଭାଷା ଓ ଇଂରାଜୀ ଚଳଣି ପ୍ରତି ଆକର୍ଷିତ ହୋଇଥିଲେ; କାରଣ ଏମାନଙ୍କ ମଧ୍ୟରୁ ଅନେକ ଧନୀ ଓ ସଂଭ୍ରାନ୍ତ ପରିବାରର ଏବଂ ସେମାନଙ୍କ ଶିକ୍ଷା ଇଂରାଜୀ ମାଧମ ବିଦ୍ୟାଳୟରେ ଓ ଇଂଲଣ୍ଡର 'ହ୍ୟାରୋ' ବା କେମ୍ବ୍ରିଜ ବିଶ୍ୱବିଦ୍ୟାଳୟରେ ହୋଇଥିଲା। ଏଣୁ ଦେଶର ଶାସନ ପରିଚାଳନା ପାଇଁ ଇଂରାଜୀ ଭାଷା ହିଁ ଉତ୍କୃଷ୍ଟ ବୋଲି ସେମାନେ ବିବେଚନା କଲେ। ସେମାନଙ୍କୁ ଶାସନ କାର୍ଯ୍ୟରେ ଯେଉଁ ଉଚ୍ଚ ପଦସ୍ଥ କର୍ମଚାରୀମାନେ ସାହାଯ୍ୟ କଲେ, ସେମାନେ ସମସ୍ତେ ଇଂରାଜୀ ଭାଷା ମାଧମରେ ପାଠପଢ଼ି ସର୍ବଭାରତୀୟ ପ୍ରତିଯୋଗିତାରେ ଉତ୍ତୀର୍ଣ୍ଣ ହୋଇଥିଲେ।

ଏହି ପରିପ୍ରେକ୍ଷୀରେ ହିନ୍ଦୀକୁ ରାଷ୍ଟ୍ରଭାଷା ଓ ପ୍ରାଦେଶିକ ଭାଷାକୁ ସରକାରୀ ସ୍ତରରେ ବ୍ୟବହାର କରିବାକୁ କାହାରି ଆନ୍ତରିକତା ନଥିଲା ଯଦିଓ ଗାନ୍ଧିଜୀ ଓ ଦେଶର ପ୍ରମୁଖ ନେତାମାନଙ୍କ ଆଗରେ ଇଂରାଜୀ ସପକ୍ଷରେ ଯୁକ୍ତି ବାଢ଼ିବା ପାଇଁ ସେମାନେ ସାହସ କରୁ ନଥିଲେ। ଆମ ଓଡ଼ିଶାର ନେତାଗଣ ସଭାସମିତିରେ ବଖାଣିଲେ ଓଡ଼ିଆକୁ ସରକାରୀ ଭାଷା କରାଯିବ। କୋର୍ଟ କଚେରୀରେ ଓଡ଼ିଆ

ଭାଷା ଚଳିବ, ଏଥିପାଇଁ ବିଧାନସଭାରେ ଆଇନ ବି ପାସ୍ ହେଲା । ଲକ୍ଷ ଲକ୍ଷ ଟଙ୍କାର ଓଡ଼ିଆ ଟାଇପ୍ ମେସିନ୍ କିଣାଗଲା, ସରକାରୀ ତହବିଲରୁ ଖର୍ଚ୍ଚ କରି ଅଫିସର, କିରାଣୀମାନଙ୍କୁ ତାଲିମ ଦିଆଗଲା । ଏସବୁ ସତ୍ତ୍ୱେ ଅର୍ଦ୍ଧ ଶତାବ୍ଦୀ ଅତିବାହିତ ହୋଇଯାଇଥିଲେ ମଧ୍ୟ ଓଡ଼ିଆ ସରକାରୀ ଭାଷା ହୋଇପାରିଲା ନାହିଁ ବା ଭବିଷ୍ୟତରେ ହେବା ବି ସମ୍ଭାବନା ନାହିଁ । କହିବା ବାହୁଲ୍ୟ ଯେ ଆମ ରାଜ୍ୟର ଖୋଦ ମୁଖ୍ୟମନ୍ତ୍ରୀଙ୍କୁ ଓଡ଼ିଆ ଭାଷା ଆଦୌ ଜଣାନାହିଁ । ସେ ବା ସରକାରୀ କାର୍ଯ୍ୟରେ ଓଡ଼ିଆ ଭାଷା ପ୍ରଚଳନ ପାଇଁ ଆଗ୍ରହ ପ୍ରକାଶ କରିବେ କାହିଁକି ?

ଅନେକ ସମୟରେ ଇଂରାଜୀ ପାଠୁଆମାନେ ଯୁକ୍ତି କରନ୍ତି ଯେ ଯେହେତୁ କେତେକ ଇଂରାଜୀ ଭାଷାର ଓଡ଼ିଆ ପ୍ରତିଶବ୍ଦ ନାହିଁ ଏଣୁ କୌଣସି ବିଷୟ ସ୍ପଷ୍ଟଭାବେ ବ୍ୟକ୍ତ କରିବାରେ ଅସୁବିଧା ହେଉଛି । ତେବେ ଋଷିଆ, ଚୀନ, ଜାପାନ ପ୍ରଭୃତି ଦେଶରେ ଇଂରାଜୀ ଭାଷା ଆଦୌ ବ୍ୟବହାର ନକରି ଦେଶରେ ସରକାରୀ କାମ ହେଉଛି କିପରି ବା ପିଲାଙ୍କୁ ବିଜ୍ଞାନ, ପ୍ରଯୁକ୍ତିବିଦ୍ୟା, ଡାକ୍ତରୀ ବା ଇଞ୍ଜିନିୟରିଂ ପଢ଼ାଯାଉଛି କିପରି ? ୧୮୭୦ ସାଲରେ ଜାପାନରେ ଏ ଧରଣର ଏକ ପ୍ରଶ୍ନ ଉଠିଥିଲା ସେତେବେଳେ ଜାପାନ ଆମେରିକା ସୈନ୍ୟମାନଙ୍କ ଅଧୀନରେ ଥିଲା । ଜାପାନର ଯୁବକମାନଙ୍କୁ ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟା ଶିକ୍ଷା ପାଇଁ ଆମେରିକା ପଠାଗଲା । ସେମାନେ ଫେରି ଯୁକ୍ତି ବାଢ଼ିଲେ, ପାଠରେ ଯେଉଁସବୁ ଶବ୍ଦ ଶିଖି ଆସିଲେ ତାର ପ୍ରତିଶବ୍ଦ ଜାପାନୀ ଭାଷାରେ ନାହିଁ । ଏସବୁ ଯୁକ୍ତି ଶୁଣି ସରକାର ସ୍ଥିର କଲେ ଯେ ଜାପାନୀ ଭାଷାରେ ସବୁ କାମ ହେବ । ଯେଉଁ ଇଂରାଜୀ ଶବ୍ଦ ଗୁଡ଼ିକର ଜାପାନୀ ପ୍ରତିଶବ୍ଦ ନାହିଁ ସେଗୁଡ଼ିକର ପ୍ରତିଶବ୍ଦ କାଳକ୍ରମେ ବାହାର କରାଯିବ । କିନ୍ତୁ ସାମୟିକ ଭାବରେ ସେଇ ଇଂରାଜୀ ଶବ୍ଦଗୁଡ଼ିକ ଜାପାନୀ ଲିପିରେ ଲେଖାଯିବ । ଆମ ଦେଶର ସରକାର କେବେ ଏହି ଧରଣର ପଦକ୍ଷେପ ନେଇଛନ୍ତି କି ? ଆମ ଦେଶର ଉଚ୍ଚଶିକ୍ଷିତ ବ୍ୟକ୍ତିଗଣ ସରକାରକୁ ଆସି ସାଧାରଣ ଜନତା ଓ ସେମାନଙ୍କ ମଧ୍ୟରେ ଭାଷା ରୂପକ ଏକ କାଳ୍ପନିକ ପାଚେରୀ ଉଠାଇ ସ୍ୱାତନ୍ତ୍ର୍ୟ ବଜାୟ ରଖିବାକୁ ଚାହିଁଲେ । ଏହା ସାମନ୍ତବାଦର ପାରମ୍ପରିକ ମନୋଭାବ ନୁହେଁ କି ? ଏବେ ପ୍ରଶ୍ନ ଉଠିଲାଣି ଆମ ଦେଶର ଅନେକ ପ୍ରାଚୀନ ଭାଷା ଲୋପ ହୋଇଯିବ କି ଏବଂ ଇଂରାଜୀ ଭାଷାର ପ୍ରାଧାନ୍ୟ ଆହୁରି ବଢ଼ିବ କି ?

ଆମ ଦେଶରେ ଇଂରାଜୀ ମାଧ୍ୟମ ବିଦ୍ୟାଳୟ ଗୁଡ଼ିକର ଚାହିଦା ଦିନକୁ ଦିନ ବଢ଼ିବାରେ ଲାଗିଛି । ଇଂରାଜୀ ମାଧ୍ୟମ ସ୍କୁଲରେ ପଢ଼ିଲେ ପିଲା ବଡ଼ ଚାକିରି ପାଇବ ବା କାରିଗରୀ ବିଦ୍ୟାରେ ପାରଙ୍ଗମତା ହାସଲ କରି ଆମେରିକା ପରି ଧନୀ ଦେଶକୁ ଯାଇ ବିତ୍ତଶାଳୀ ହେବ - ଏହି ଆଶାରେ ଅଭିଭାବକ ଗଣ ପ୍ରଚୁର ଅର୍ଥ ବ୍ୟୟକରି ନିଜ ପୁଅ ଝିଅଙ୍କୁ ଇଂରାଜୀ ମାଧ୍ୟମ ସ୍କୁଲରେ ପାଠ ପଢ଼ାଉଛନ୍ତି । ଏବେ ଆମ ଦେଶରେ ଇଂରାଜୀ ମାଧ୍ୟମ ୩୦୦୦ କ୍ୟାଥଲିକ୍ ସ୍କୁଲ, ୯୦୦ କେନ୍ଦ୍ରୀୟ ବିଦ୍ୟାଳୟ, ୪୨୩ ଜବାହାର ନବୋଦୟ ବିଦ୍ୟାଳୟ, ୫୫୦ ଡି.ଏ.ଭି ସ୍କୁଲ ଚାଲିଛି । ୫୦୦୦ ପବ୍ଲିକ ସ୍କୁଲରେ

ଶିକ୍ଷାଦାନର ସବୁପ୍ରକାର ଆନୁଷାଙ୍ଗିକ ବ୍ୟବସ୍ଥା ଅଛି । ଏପରିକି, ଏହି ବିଦ୍ୟାଳୟ ଗୁଡ଼ିକରେ ଛାତ୍ର-ଶିକ୍ଷକ ଅନୁପାତରେ ୨୦ ଜଣ ଛାତ୍ରଙ୍କୁ ଜଣେ ଲେଖାଏଁ ଶିକ୍ଷକ ନିଯୁକ୍ତ ହୋଇଛନ୍ତି ।

ସ୍ୱାଧୀନତାର ଅର୍ଦ୍ଧଶତାବ୍ଦୀ ହୋଇଥିଲେ ହେଁ ଆମ ସରକାର ଦେଶରେ କୌଣସି ଏକ ନିର୍ଦ୍ଦିଷ୍ଟ ଶିକ୍ଷାନୀତି ପ୍ରଚଳନ ପାଇଁ ବ୍ୟବସ୍ଥା ନକରି ସମାନ୍ତରାଳରେ ଦୁଇପ୍ରକାର ଶିକ୍ଷାଦେବାର ବ୍ୟବସ୍ଥା କରି ଇଂରାଜୀ ମାଧମ ଶିକ୍ଷା ପାଇଁ ବିଶେଷ ପ୍ରୋତ୍ସାହନ ଦେଉଛନ୍ତି; ଫଳରେ ଦେଶରେ ଏକ ନବ୍ୟ ସାମନ୍ତବାଦୀ ଗୋଷ୍ଠୀ ଗଢ଼ି ଉଠିଛି । ଏପରିସ୍ଥଳେ, ଇଂରାଜୀ ଭାଷା ହଟାଅ ସ୍ଲୋଗାନ୍ କାର୍ଯ୍ୟକାରୀ ହେବା ସମ୍ଭବ କି ?



(ସମାଜ ଜାନୁୟାରୀ ୩୧, ୨୦୦୨ ରେ ପ୍ରକାଶିତ)

# କିଏ ଶୁଣିବ ହୋ, ଆମେ ପାଠପଢ଼ି ହେଲୁ ନାଶ

ବିଗତ ଶତାବ୍ଦୀର ଷଷ୍ଠ ଦଶନ୍ଧି ପର୍ଯ୍ୟନ୍ତ ଗଣକବି ବୈଷ୍ଣବ ପାଣିଙ୍କ ଗୀତିନାଟ୍ୟ ସାଧାରଣ ଜନତାର ମନୋରଞ୍ଜନ ପାଇଁ ଏକ ପ୍ରଧାନ ଭୂମିକା ଗ୍ରହଣ କରିଥିଲା । ଲୋକେ ସାମୟିକ ଭାବେ ପାଲା, ଦାସକାଠିଆ ବା ଅନ୍ନପୂର୍ଣ୍ଣା ରଙ୍ଗମଞ୍ଚରେ ନାଟକ ଦେଖିବାକୁ ସୁବିଧା ସୁଯୋଗ ପାଉଥିଲେ । ଇଲେକ୍ଟ୍ରୋନିକ୍ସ ମାଧ୍ୟମର ପ୍ରସାର ସେତେବେଳକୁ ହୋଇନଥିଲା । ଲୋକେ ସାରାରାତି ସଞ୍ଜ ମୁହଁରୁ ସୂର୍ଯ୍ୟୋଦୟ ପର୍ଯ୍ୟନ୍ତ ଖୋଲା ଆକାଶ ତଳେ ବସି ଗୀତିନାଟ୍ୟ ଦେଖିଲେ ବି ବିରକ୍ତିଭାବ ପ୍ରକାଶ କରୁନଥିଲେ କାରଣ ଲୋକଙ୍କ ଚିତ୍ତବିନୋଦନ ପାଇଁ ମଝିରେ ମଝିରେ ସୁଆଙ୍ଗ ପରିବେଷଣ କରିବାର ବ୍ୟବସ୍ଥା ଥିଲା । ସୁଆଙ୍ଗରେ ବୋଲାଯାଇଥିବା ଏକ ଗୀତ ମୋ'ର ମନେପଡ଼େ । ଗୀତଟି ହେଲା -

କିଏ ଶୁଣିବ ହୋ,<br>
ଆମେ ପାଠପଢ଼ି ହେଲୁ ନାଶ ।<br>
ଭଣ୍ଡାରି ଛାଡ଼ିଲେ କ୍ଷୁର ନହୁରୁଣୀ,<br>
ଚାଷୀଏ ଛାଡ଼ିଲେ ଚାଷ ।<br>
ସମସ୍ତେ କାନରେ କଲମ ଖୋଷିଲେ<br>
ବିଲବାଡ଼ି ହେଲା ଘାସ ।"

ଆମେ ସେତେବେଳେ ଭାବୁଥିଲୁ ଏ ଏକ ସାମନ୍ତବାଦୀ ଚିନ୍ତାଧାରା କାରଣ ଲୋକେ ଅଜ୍ଞ, ଅଶିକ୍ଷିତ ହୋଇ ରହିଲେ, ସେମାନଙ୍କୁ ଅତ୍ୟାଚାର ଓ ଶୋଷଣ କରିବାକୁ ସୁବିଧା ହେବ କିନ୍ତୁ ଗଣକବିଙ୍କ ଲେଖାର ଉଦ୍ଦେଶ୍ୟ ସେଇୟା ନଥିଲା । ଲୋକେ ଅଶିକ୍ଷିତ, ଅପାଠୁଆ ହୁଅନ୍ତୁ, ଏହା ବି ତାଙ୍କର ଉଦ୍ଦେଶ୍ୟ ନୁହେଁ । ଏହା ଥିଲା ଇଂରାଜୀ ଶିକ୍ଷାପଦ୍ଧତି ବିରୋଧରେ ଜନମତ ସୃଷ୍ଟି କରିବା । ଲର୍ଡ ମେକଲେଙ୍କ ପ୍ରବର୍ତ୍ତିତ ଶିକ୍ଷା କିପରି ଯୁବକ ଯୁବତୀମାନଙ୍କୁ ପଙ୍ଗୁ କରିଦେଉଛି, ସେମାନେ କୌଣସି ଶାରୀରିକ ପରିଶ୍ରମ କରିବାକୁ ବୀତସ୍ପୃହ, ଚାକିରିଟିଏ କରି ବାବୁଭାୟା ଜୀବନଯାପନ କରିବାକୁ ଇଚ୍ଛୁକ ଏକଥା ସୂଚାଇ ପ୍ରଚଳିତ ଶିକ୍ଷା ବିରୋଧରେ ଜନ ସଚେତନତା ସୃଷ୍ଟି କରିବା ଗଣକବିଙ୍କ ଲକ୍ଷ୍ୟ । ପ୍ରଥମ ଭାଗଟିର, ଲର୍ଡ ମେକଲେଙ୍କ ଭାଷାରେ, ଜନ୍ମ ଓ ବର୍ଣ୍ଣରେ ଭାରତୀୟ ହେଲେ ବି ଇଂରାଜୀ ଭାଷା, ରୁଚି ଓ ଚଳଣି ପ୍ରତି ସେମାନଙ୍କ ବିଶେଷ ଅନୁରକ୍ତି ଥିଲା ଏବଂ ଏମାନଙ୍କୁ ଇଂରେଜ ଶାସକଗଣ ସହଜରେ ଅକ୍ତିଆର କରିପାରୁଥିଲେ କିନ୍ତୁ ଅନ୍ୟଭାଗଟିକୁ ଯେଉଁମାନେ ଖାଣ୍ଟି ଭାରତୀୟ ଏବଂ ଭାରତୀୟ ସଂସ୍କୃତି

ସହ ଓତପ୍ରୋତ ଭାବେ ଜଡ଼ିତ ସେମାନଙ୍କୁ ଆୟତ୍ତାଧୀନ କରିବା ଇଂରେଜ ଶାସକମାନଙ୍କ ପକ୍ଷରେ ସହଜସାଧ ନଥିଲା । ପ୍ରଥମ ଭାଗର ପ୍ରୋକ୍ତ ଇଂରାଜୀ ପାଠୁଆ ଦଳ ସବୁ ଶାସନକାଳରେ ସରକାରଙ୍କ ପ୍ରତି ଏକ ବୋଝ କାରଣ ଇଂରାଜୀ ପାଠ ପଢ଼ି ଏପରି ତାଲିମ ପାଇଲେ ଯେ ଚାକିରି ପଛରେ ଗୋଡ଼ାଇବା ଛଡ଼ା ଏମାନଙ୍କର ଆଉ କୌଣସି ରାହା ରହିଲା ନାହିଁ । ଆମ ଗାଁ ଗହଳରେ ପ୍ରଚଳିତ ଢ଼ଗ ଅଛି – 'ଯେବେ ବୁଣ, ତେବେ ବୁଣ, ଦଶରା ମାସରେ ଠୁଣ ଠୁଣ' ଅର୍ଥାନ୍ତରେ କାମ କର ନକର ବା ମାସଯାକ ପଡ଼ିଆ କଲେ ବି ମାସ ଶେଷରେ ଦରମା ଗଣ୍ଡାକ ସୁରୁଖୁରୁରେ ମିଳିଯିବ । ଦେଖାଯାଏ ଯେ ଲୋକଙ୍କ ତିରିଶ, ଚାଳିଶ ଏକର ଚାଷଜମି ପଡ଼ିଆ ପଡ଼ିଛି ଅଥଚ ହାକିମଙ୍କୁ ଚାଳିଶ ପଚାଶ ହଜାର ଟଙ୍କା ଲାଞ୍ଚ ଦେଇ ପ୍ରାଥମିକ ଶିକ୍ଷକ ବା ପିଅନ ଚାକିରିଟିଏ କରିବାକୁ ଶିକ୍ଷିତ ଯୁବକ ଯୁବତୀ ମାନେ ଲାଳାୟିତ ।

ଦେଶର ଭବିଷ୍ୟତକୁ ଲକ୍ଷ୍ୟରେ ରଖି ଗାନ୍ଧିଜୀ ମୌଳିକ ଶିକ୍ଷା ପ୍ରଚଳନ ପାଇଁ ପ୍ରସ୍ତାବ ରଖିଥିଲେ । ଭଲମଣିଷ ହେବାପାଇଁ ପିଲାଏ କେତେକ ଭଲକଥା ଶିଖିବା ଦରକାର । ଏତଦ୍ ବ୍ୟତୀତ ପ୍ରତ୍ୟେକ କୌଣସି ନା କୌଣସି କାମ କରି ନିଜେ ଚଳିବେ, କାହାରି ଉପରେ ନିର୍ଭରଶୀଳ ହେବେନାହିଁ ବା ଅନ୍ୟକୁ ଶୋଷଣ କରି ଅୟସ ଜୀବନଯାପନ କରିବା ମନୋବୃତ୍ତି ପିଲାଙ୍କ ରହିବ ନାହିଁ ଏହା ହିଁ ମୌଳିକ ଶିକ୍ଷାର ଲକ୍ଷ୍ୟଥିଲା; କିନ୍ତୁ ୧୮୩୫ ସାଲରୁ ୧୯୪୫ ସାଲ ମଧ୍ୟରେ ଅର୍ଥାତ୍ ମାତ୍ର ୧୧୦ ବର୍ଷ ମଧ୍ୟରେ ଇଂରାଜୀ ଶିକ୍ଷାର ଚେର ଦେଶରେ ଏପରି ମାଡ଼ି ଯାଇଥିଲା ଯେ ମୌଳିକ ଶିକ୍ଷା ଲୋକଙ୍କ ଦ୍ୱାରା ଆଦୌ ଆଦୃତ ହେଲାନାହିଁ । ଏପରିକି ଗାଁ ଗହଳି ଲୋକେ ବି ମୌଳିକ ଶିକ୍ଷାକୁ ନାପସନ୍ଦ କଲେ । ଏଣୁ ଗାନ୍ଧିଜୀଙ୍କ ଆତ୍ମପୋଷଣ ଶ୍ରମ କଳ୍ପନା କଳ୍ପନାରେ ହିଁ ରହିଲା । ଗାନ୍ଧିଜୀଙ୍କ ଚିନ୍ତାଧାରାକୁ କାର୍ଯ୍ୟକାରୀ କରିଥିଲେ ଦେଶରେ ହଜାର ହଜାର ଶିକ୍ଷିତ ଯୁବକ ଯୁଚତୀ ବେକାର ହୋଇ ବୁଲୁ ନଥାନ୍ତେ, ଚାକିରିର ପ୍ରତୀକ୍ଷାରେ ନଥାନ୍ତେ ବା ଚଳଣି ପାଇଁ ବିଭିନ୍ନ ଘୃଣ୍ୟ ଅପରାଧରେ ନିଜକୁ ଜଡ଼ିତ କରୁନଥାନ୍ତେ । ପ୍ରତ୍ୟେକ ପରିବାରର କୌଳିକ ବୃତ୍ତି ପିଲାଙ୍କୁ ପାଠ ପଢ଼ାଇବା ଯୋଗୁଁ ଏବେ ବନ୍ଦ ହୋଇଗଲାଣି ।

ଆଗେ ମେଧାବୀ ଛାତ୍ରମାନେ ପ୍ରଶାସକ, ଅଧ୍ୟାପକ, ଡାକ୍ତର ଓ ଇଞ୍ଜିନିୟର ହେବାପାଇଁ ଚାହୁଁଥିଲେ ଅର୍ଥାତ୍ ସମାଜରେ ନିଜକୁ ପ୍ରତିଷ୍ଠିତ କରାଇବା ପାଇଁ ଏ ଚାକିରିଗୁଡ଼ିକ ପ୍ରତି ସେମାନେ ଆକର୍ଷିତ ହେଉଥିଲେ, କିନ୍ତୁ ଏବେ ପିଲାଙ୍କୁ କମ୍ପ୍ୟୁଟର ଇଞ୍ଜିନିୟରିଂ ବିଶେଷଭାବେ ଆକର୍ଷଣ କଲାଣି । କମ୍ପ୍ୟୁଟର ଇଞ୍ଜିନିୟରିଂ ପଢ଼ି ବିଦେଶ ଯିବେ, ବହୁତ ପଇସା ରୋଜଗାର କରିବେ ଏବଂ ଅୟସ ଜୀବନଯାପନ କରିବେ, ଏଇୟା ହିଁ ସେମାନଙ୍କ ଲକ୍ଷ୍ୟ । ଫଳରେ ଏବେ ଇଞ୍ଜିନିୟରିଂ କଲେଜ ଖୋଲିବା ଏକ ମୁଖ୍ୟ ବ୍ୟବସାୟରେ ପରିଣତ ହୋଇଛି । ଆର୍ଥିକ ଅବସ୍ଥା ସ୍ୱଚ୍ଛଳ ନଥିଲେ ବି ପିଲାଙ୍କୁ ଇଞ୍ଜିନିୟରିଂ ପଢ଼ାଇବା ପାଇଁ ଋଣକରି ଲକ୍ଷ ଲକ୍ଷ ଟଙ୍କା ଖର୍ଚ୍ଚ କରିବାକୁ ଅଭିଭାବକ ଗଣ ଆଦୌ ପଶ୍ଚାତ୍‌ପଦ ନୁହନ୍ତି । ସେମାନଙ୍କ ଆଶା ଯେ ବ୍ୟୟ କରୁଥିବା ଟଙ୍କା ମୂଳସୁଧ ସହ ଫେରି ପାଇବେ । ଇଞ୍ଜିନିୟରିଂ

ଶିକ୍ଷାର ଭବିଷ୍ୟତ ଯେ କ'ଣ ହେବ, ତାହା କଳ୍ପନା କରି ହେଉନାହିଁ।

ଆମେରିକା ପରି ଶିଳ୍ପ ସମୃଦ୍ଧ ଦେଶଗୁଡ଼ିକ ଭାରତୀୟ ଇଞ୍ଜିନିୟର ମାନଙ୍କୁ ଚାକିରିରୁ ଛଟେଇ କରିବାକୁ ଆରମ୍ଭ କଲେଣି। ସେମାନଙ୍କ ମଧ୍ୟରୁ ଅନେକେ ଦେଶକୁ ଫେରି ଆସିଲେଣି। ଏମାନେ ଆସି ଏଠାରେ କ'ଣ କରିବେ, ସେମାନଙ୍କୁ କି ପ୍ରକାର ଉପଯୋଗ କରାଯିବ, ତାହା ବିଶେଷ ଚିନ୍ତାର ବିଷୟ ହେଲାଣି। ବିଦେଶ ଫେରନ୍ତା ଏହି ଉଚ୍ଚ ଶିକ୍ଷିତ ବେକାର ଇଞ୍ଜିନିୟର ମାନେ ଏ କୁଳର ହେଲେ ନାହିଁ ବା ସେ କୁଳର ହେଲେ ନାହିଁ। ଏମାନେ ନା ନିଜ କୌଳିକ ବୃତ୍ତି କରିବେ ନା ଶାରୀରିକ ପରିଶ୍ରମ କରି ରୋଜଗାର କରି ପାରିବେ। ଏଣୁ ଯେଉଁ ଶିକ୍ଷା ମଣିଷକୁ ସ୍ୱାବଲମ୍ବୀ ନ କଲା, ସେଇ ଶିକ୍ଷାର ମୂଲ୍ୟ କ'ଣ ?



(ସମାଜ, ଅଗଷ୍ଟ ୧୧, ୨୦୦୧ ରେ ପ୍ରକାଶିତ)

# ପରିବେଶ ସୁରକ୍ଷାରେ ଶିକ୍ଷାର ଭୂମିକା

ଗତ ଦୁଇଦଶନ୍ଧି ହେଲା ପରିବେଶର ସୁରକ୍ଷା ଉପରେ ଆଲୋଚନା, ପର୍ଯ୍ୟାଲୋଚନା ଚାଲିଛି ଏବଂ ଅନ୍ୟପକ୍ଷରେ ବନ୍ୟ ସଂପଦର ଧ୍ୱଂସ ହେବା ସହ ପଞ୍ଚମହାଭୂତର ପ୍ରଦୂଷଣ ଏପରି ଏକ ସ୍ତରରେ ପହଞ୍ଚିଲାଣି ଯେ ପୃଥିବୀ ପୃଷ୍ଠରେ ଜୀବନଧାରଣ ଦିନୁଦିନ ଦୁର୍ବିସହ ହୋଇଉଠୁଛି । ୧୯୭୨ ସାଲରେ ଷ୍ଟକ୍‌ହୋମ୍‌ଠାରେ ପରିବେଶର ସୁରକ୍ଷା ପାଇଁ ଆନ୍ତର୍ଜାତିକ ସମ୍ମିଳନୀ ପରେ ଇଂଲଣ୍ଡ, ଜାପାନ, ଜର୍ମାନୀ ପରି ଉନ୍ନତ ଦେଶ ଏହା ଉପରେ ଗୁରୁତ୍ୱ ଦେଇ ବହୁବିଧ ପଦକ୍ଷେପ ନେଲେଣି, କିନ୍ତୁ ବିକାଶଶୀଳ ଦେଶଗୁଡ଼ିକରେ ଏହା କେବଳ ଆଲୋଚନାରେ ସୀମିତ ରହିଛି । ପରିବେଶ ବୋଇଲେ ସାଧାରଣତଃ ପଞ୍ଚ ମହାଭୂତ ବ୍ୟତୀତ ମଣିଷ, ଜୀବଜନ୍ତୁ, ବୃକ୍ଷଲତା ଅନ୍ତର୍ଭୁକ୍ତ । ଏ ସମସ୍ତଙ୍କର ମଧ୍ୟରେ ସମନ୍ୱୟ ରକ୍ଷାକରିବା ହିଁ ପରିବେଶର ସୁରକ୍ଷା ବୁଝାଯାଏ । ଉଦ୍ଭିଦ ଜଗତ ଓ ପ୍ରାଣୀଜଗତକୁ ଧ୍ୱଂସ ମୁଖରୁ ରକ୍ଷା କରିବା ଏହାର ମୁଖ୍ୟ ଲକ୍ଷ୍ୟ । ବନ ସମ୍ପଦର ବିବିଧତା ଓ ପ୍ରାଚୁର୍ଯ୍ୟ ହେଉଛି ପରିବେଶ ସୁରକ୍ଷାର ଆଧାର । ଏହାର ଅଭାବରେ ପ୍ରକୃତି ବିକୃତ ରୂପ ଧାରଣ କରେ ଏବଂ ଶାନ୍ତ ପ୍ରକୃତି ଅଶାନ୍ତ ହୋଇଉଠେ, ସୃଷ୍ଟିକରେ ଧ୍ୱଂସର ତାଣ୍ଡବଲୀଳା । ତାପମାତ୍ରାର ଅତ୍ୟଧିକ ବୃଦ୍ଧି, ଅନାବୃଷ୍ଟି, ଅତିବୃଷ୍ଟି, ଭୂସ୍ଖଳନ, ଭୂକମ୍ପନ ଆଦି ବିଲକ୍ଷଣ ପ୍ରକୃତିରେ ପ୍ରକଟିତ ହୁଏ । ପୃଥିବୀ ପୃଷ୍ଠରେ ମଣିଷର ସୃଷ୍ଟି ଦିନଠାରୁ ମଣିଷ ଓ ପ୍ରକୃତି ମଧ୍ୟରେ ସଂଗ୍ରାମ ଚାଲିଆସିଛି ଏବଂ ଅନେକ କ୍ଷେତ୍ରରେ ପ୍ରକୃତି ପରାଜୟ ସ୍ୱୀକାର କରିଛି; କିନ୍ତୁ ଏବେ ପ୍ରକୃତିର ଉଗ୍ରରୂପ ଆଗରେ ମଣିଷ ପରାଭବ ସ୍ୱୀକାର କରିବାକୁ ବାଧ ହେଉଛି ।

## ଭାରତୀୟ ସଂସ୍କୃତି ଓ ପରିବେଶ :

ଆମର ପୂର୍ବପୁରୁଷ ବନ୍ୟ ସମ୍ପଦର ଧ୍ୱଂସହେଲେ ଫଳାଫଳ ମଣିଷ ଜାତି ପ୍ରତି ଅତି ମାରାତ୍ମକ ହେବ ଏକଥା ଉପଲବ୍ଧି କରି ତା'ର ସୁରକ୍ଷା ନିମନ୍ତେ ବିହିତ ବ୍ୟବସ୍ଥା ଗ୍ରହଣ କରିଥିଲେ । ସାଧାରଣ ମଣିଷ ପକ୍ଷରେ ଏ କଥା ବୁଝିବା ଅସମ୍ଭବ ମନେକରି ସେମାନଙ୍କ ମନରେ ଧର୍ମଧାରଣା ସୃଷ୍ଟି କରାଯାଇଥିଲା । ଆମ ଶାସ୍ତ୍ର କହେ - 'ଈଶାବାସ୍ୟଂ ଇଦଂ ସର୍ବମ୍' ଅର୍ଥାତ୍ ଈଶ୍ୱର ସର୍ବତ୍ର ବିଦ୍ୟମାନ, ସଂସାର ବ୍ରହ୍ମମୟ । ଜଡ଼ ହେଉ ବା ଚେତନ ହେଉ ପ୍ରତ୍ୟେକରେ ବିଶ୍ୱକର୍ତ୍ତାଙ୍କ ସତ୍ତା ବିଦ୍ୟମାନ । ଏଣୁ ସୃଷ୍ଟିର ଯତ୍ନ ନେଲେ ସ୍ରଷ୍ଟା ସନ୍ତୋଷ ହୋଇ ଆଶୀର୍ବାଦ କରନ୍ତି, ଯଦ୍ୱାରା ସୃଷ୍ଟିର ମଙ୍ଗଳ ହୁଏ । ଏହାଥିଲା ଭାରତର ସାମାଜିକ ତଥା ସାଂସ୍କୃତିକ ଜୀବନ ଯାହାର ଆଧାରରେ ଆମର ପୂର୍ବଜ ଗଣ ସୁସ୍ଥ ଓ ନିରାମୟ ଜୀବନ ଯାପନ କରିବା ସହ ଉନ୍ନତ ଚିନ୍ତାରେ ସେମାନଙ୍କ ସମୟକୁ ବିନିଯୋଗ କରୁଥିଲେ । ଏହା

କ୍ରମଶଃ ଲୋପ ହେବାର ପରିଣାମ ଆମେ ଏବେ ଭୋଗ କରୁଛେ । ପୃଥିବୀ, ଆକାଶ, ନଦୀ, ସମୁଦ୍ର, ବଣ, ପାହାଡ଼, ବୃକ୍ଷଲତା, ପଶୁପକ୍ଷୀ, କୀଟପତଙ୍ଗ, ସରୀସୃପ ବିଶ୍ୱସ୍ରଷ୍ଟାଙ୍କ ଏକ ଏକ ପ୍ରତିକୃତି ବୋଲି ଗ୍ରହଣ କରାଯାଉଥିଲା । କୈଳାଶ ପର୍ବତରେ ଶିବ, ତିରୁମଲ୍ଲାରେ ବିଷ୍ଣୁ, ବିନ୍ଧ୍ୟାଚଳରେ ଦେବୀ ବିନ୍ଧ୍ୟାଚଳବାସିନୀ, ଅରୁଣାଚଳରେ ସୂର୍ଯ୍ୟଦେବଙ୍କ ଆବାସସ୍ଥଳୀ ରୂପେ ସେ ସ୍ଥାନ ପୁଣ୍ୟପୀଠରେ ପରିଗଣିତ ହୋଇଛି । ତିରୁମଲ୍ଲା ପାହାଡ଼ ଉପରକୁ ଭକ୍ତ ପବିତ୍ର ହୃଦୟ ଓ ମନରେ ପାଦରେ ଚାଲି ଆରୋହଣ କରିବାର ବିଧି ଅଛି ।

ଭାରତୀୟ ଦର୍ଶନରେ ନଦୀପ୍ରାଣ ପ୍ରବାହର ପ୍ରତୀକ । ସମୁଦ୍ରରେ ମିଳନ ପରମାତ୍ମା ସହ ଆତ୍ମାର ମିଳନର ନିଦର୍ଶନ । ଭାରତୀୟଙ୍କ ଅବଚେତନରେ ନଦୀର ପ୍ରାଗୈତିହାସିକ ପ୍ରଭାବ ଅତି ସୂକ୍ଷ୍ମ ଅବସ୍ଥାରେ ସଂସ୍ଥିତ । କୌଣସି ପୁଣ୍ୟ କାର୍ଯ୍ୟରେ ସଂକଳ୍ପ କଲାବେଳେ ମନ୍ତ୍ର ଉଚ୍ଚାରଣ କରାଯାଏ - "ଓଁ ଗଙ୍ଗେଚ ଯମୁନା ଶ୍ଚୈବ ଗୋଦାବରୀ ସରସ୍ୱତୀ, ନର୍ମଦେ ସିନ୍ଧୁ କାବେରୀ ଜଳେଽସ୍ମିନ୍ ସନ୍ନିଧିଂ କୁରୁ ।" ଏହି ନଦୀଗୁଡ଼ିକର ପବିତ୍ର ଜଳର ସମ୍ମିଶ୍ରଣରେ ଶୁଭକର୍ମ ଆରମ୍ଭ ହୁଏ । ପୁରାଣ ବର୍ଣ୍ଣିତ ଗଙ୍ଗାନଦୀ ବିଷ୍ଣୁଙ୍କ ନଖ କୋଣରୁ ନିସୃତ, ଯମୁନା ଓ ସରଜୁ ନଦୀ ଯଥାକ୍ରମେ ଆର୍ଯ୍ୟାବର୍ତ୍ତର ଶ୍ରେଷ୍ଠ ଜ୍ଞାନୀ ଶ୍ରୀକୃଷ୍ଣ ଓ ପୁରୁଷୋତ୍ତମ ରାମଙ୍କ ସାନ୍ନିଧ ଯୋଗୁଁ ପବିତ୍ରତା ଲାଭ କରିଛନ୍ତି । ନର୍ମଦାନଦୀର ପ୍ରତ୍ୟେକ କ୍ଷୁଦ୍ରଶିଳା ଶିବଲିଙ୍ଗର ପ୍ରତୀକ । କାବେରୀ ନଦୀର ଜଳକୁ ଗଙ୍ଗାଜଳ ଠାରୁ ଅଧିକ ପବିତ୍ର ବୋଲି ଶାସ୍ତ୍ରରେ ବର୍ଣ୍ଣିତ ହୋଇଛି । ଦକ୍ଷିଣ ଭାରତର ପାଞ୍ଚୋଟି ଶିବ ମନ୍ଦିର ପଞ୍ଚମହାଭୂତର ନିଦର୍ଶନ ।

ବୃକ୍ଷପୂଜା ଆମ ଦେଶର ପ୍ରାଚୀନତମ ପ୍ରଚଳିତ ବିଧି । ବଟ, ଉଦୁମ୍ବର, ଅଶ୍ୱତ୍ଥ ବୃକ୍ଷଗୁଡ଼ିକର ନାମ ଈଶ୍ୱରଙ୍କ ନାମରୂପେ 'ବିଷ୍ଣୁ ସହସ୍ରନାମ'ରେ ସ୍ଥାନିତ ହୋଇଛି । ମହାପ୍ରଭୁ ଜଗନ୍ନାଥଙ୍କ ଆବିର୍ଭାବ ହୁଏ ନିମ୍ବଦାରୁରେ । ଭଗବାନ ନୃସିଂହ ଅବତାର ଧାରଣ କରି ହିରଣ୍ୟକଶିପୁଙ୍କୁ ବଧ କଲାପରେ ନିମ୍ବବୃକ୍ଷରେ ଲୀନ ହୋଇଥିଲେ । ପ୍ରଳୟ ସମୟରେ ବିଷ୍ଣୁ କ୍ଷୁଦ୍ର ରୂପ ଧାରଣ କରି ବଟପତ୍ରରେ ଆଶ୍ରୟ ନେଇଥିଲେ । ଅଶ୍ୱତ୍ଥ ବୃକ୍ଷ ସମସ୍ତ ଦେବଦେବୀଙ୍କ ଆଶ୍ରୟସ୍ଥଳୀ । ବିଭିନ୍ନ ଦେବସ୍ଥଳୀରେ ଆମ୍ବ, ପଣସ, ତାଳ ବୃକ୍ଷର ପୂଜା କରାଯାଏ ।

ପଶୁ ଓ ପକ୍ଷୀଗଣ ଦେବଦେବୀଙ୍କ ବାହାନ ରୂପେ ଆମ ଦେଶରେ ପୂଜା ପାଆନ୍ତି । ସିଂହ, ହାତୀ, ବୃଷଭ, ଗରୁଡ଼, ପେଚା, କୁଆ, ହଂସ, ମୂଷା ଆଦି ପଶୁପକ୍ଷୀ ଯଥାକ୍ରମେ ଦୁର୍ଗା, ଇନ୍ଦ୍ର, ଶିବ, ବିଷ୍ଣୁ, କାର୍ତ୍ତିକେୟ, ଲକ୍ଷ୍ମୀ, ଶନି, ସରସ୍ୱତୀ ଓ ଗଣେଶଙ୍କ ବାହାନ ଅଟନ୍ତି । ସର୍ପ ବିଷ୍ଣୁଙ୍କ ଶଯ୍ୟା ଓ ଶିବଙ୍କ ଅଙ୍ଗଭୂଷଣ । ଗୋଧନ କୃଷ୍ଣଙ୍କ ଏତେ ପ୍ରିୟ ଯେ ତାଙ୍କୁ ଗୋପାଳକୃଷ୍ଣ ରୂପେ ପୂଜା କରାଯାଏ । କାଞ୍ଚି ମନ୍ଦିରରେ ଝିଣ୍ଟିକା, ରାଜସ୍ଥାନର ଏକ ଗ୍ରାମରେ ମୂଷା ଓ ଦକ୍ଷିଣ ଭାରତର ଏକ ମନ୍ଦିରରେ ବୁଢ଼ିଆଣି ପୂଜା ପାଆନ୍ତି ।

ବିଶେଷତଃ ତୁଳସୀ ଆମ ସଂସ୍କୃତିର ପ୍ରତୀକ। ତୁଳସୀ, ଦୁବ ଓ ବରକୋଳି ପତ୍ର ଦେବଦେବୀ ପୂଜା ପ୍ରଧାନ ସାମଗ୍ରୀ। ଭାରତୀୟ ଧର୍ମ ଶାସ୍ତ୍ରରେ ବୃକ୍ଷଲତା ବନସ୍ପତି ସହିତ ମନୁଷ୍ୟର ସଜୀବ ସମ୍ପର୍କ ନେଇ ଅନେକ ଘଟଣା ଲିପିବଦ୍ଧ ହୋଇଛି। ଆର୍ଯ୍ୟୁବେଦ ଶାସ୍ତ୍ରର ପିତାମହ ଚରକ ଜଙ୍ଗଲର ବୃକ୍ଷଲତା ସହ ପ୍ରତ୍ୟକ୍ଷ ବାର୍ତ୍ତାଲାପ କରି ସେମାନଙ୍କ ଔଷଧୀୟ ଗୁଣ ସମ୍ବନ୍ଧରେ ଜାଣୁଥିଲେ। ଏବେ ସେ କଥା ପରୀକ୍ଷା କରି ବୈଜ୍ଞାନିକମାନେ କହୁଛନ୍ତି। ଜାପାନର ଟୋକିଓ ବିଶ୍ୱବିଦ୍ୟାଳୟର ବରିଷ୍ଠ ଅଧାପକ ନକ୍ଲନ୍ କେନ୍‌ହୋଣୀ ମତୋ ଗବେଷଣା କରି ଜାଣି ପାରିଛନ୍ତି ଯେ କ୍ୟାକ୍‌ଟସ ଗଛମାନେ ଗଣି ଶିଖିଛନ୍ତି ଏବଂ ପ୍ରଶ୍ନ ପଚାରିଲେ ଉତ୍ତର ମଧ ଦିଅନ୍ତି। ଅନ୍ୟ ଏକ ବୈଜ୍ଞାନିକ ଗବେଷଣାରୁ ଜଣାଯାଏ ଯେ ଗୃହକୁ ଚୋର କବଳରୁ ରକ୍ଷା କରିବାରେ ବୃକ୍ଷର ଭୂମିକା ଅତି ଚମକପ୍ରଦ। ଏହି ପରିପ୍ରେକ୍ଷୀରେ ପ୍ରାଚୀନ ଶାସ୍ତ୍ର ମତ୍ସ୍ୟ ପୁରାଣରେ ଲେଖା ଅଛି ଯେ ଦଶଟି ସୁପୁତ୍ର ସହ ଗୋଟିଏ ବୃକ୍ଷ ସମାନ। ସ୍ୱଭାବ କବି ଗଙ୍ଗାଧରଙ୍କ 'ତପସ୍ୱିନୀ' କାବ୍ୟରେ ମହର୍ଷି ବାଲ୍ମୀକି ଅନ୍ତଃସତ୍ତ୍ୱା ସୀତାଙ୍କୁ ଉପଦେଶ ଛଳରେ କହିଛନ୍ତି- 'ଦେଖିବା ଆଗରୁ ତନୟ ମୁଖ, ଲଭିବୁ ତନୟର ପାଳନ ସୁଖ'। ଅର୍ଥାତ୍ ବୃକ୍ଷଲତାର ଯତ୍ନ ନେଇ ପ୍ରସବ ପୂର୍ବରୁ ସନ୍ତାନମାନଙ୍କ ଲାଳନପାଳନ ଜନିତ ସୁଖ ଅନୁଭବ କରିବୁ। ଏ ସମସ୍ତ ତଥ୍ୟାବଳୀରୁ ଚେତନ ଆତ୍ମା ସର୍ବତ୍ର ବିଦ୍ୟମାନ ବୋଲି ସୂଚନା ମିଳେ। ଏଣୁ ଜୀବଜନ୍ତୁ, ବୃକ୍ଷ ବନସ୍ପତି ସହ ସହୃଦୟତା ପୂର୍ଣ୍ଣ ବ୍ୟବହାର କରି ବୃକ୍ଷ ସମ୍ପଦର ଅଭିବୃଦ୍ଧି କରିବା ଆବଶ୍ୟକ।

## ପ୍ରଦୂଷିତ ପରିବେଶ ଓ ପ୍ରାଣୀଜଗତ :

ବୈଜ୍ଞାନିକ ପରୀକ୍ଷାରୁ ଜଣାଯାଏ ଯେ ଗୋଟିଏ ବଡ଼ ବୃକ୍ଷ ପନ୍ଦର ଗୋଟି ଶୀତ-ତାପ-ନିୟନ୍ତ୍ରଣ ଯନ୍ତ୍ରର କାର୍ଯ୍ୟକରେ। ଫଳସ୍ୱରୂପ, ବାୟୁମଣ୍ଡଳକୁ ପ୍ରଦୂଷଣମୁକ୍ତ କରିବା ସହ ବିଦ୍ୟୁତ ଖର୍ଚ୍ଚ ଶତକଡ଼ା ପନ୍ଦର କମ୍ କରେ। ପ୍ରଚଣ୍ଡ ଗ୍ରୀଷ୍ମକାଳରେ ବୃକ୍ଷଲତା ଉତ୍ତାପ ହ୍ରାସ କରନ୍ତି ଏବଂ ପ୍ରବଳ ଶୀତବେଳେ ବାୟୁର ତାପମାତ୍ରା ବୃଦ୍ଧି କରନ୍ତି। ବାୟୁ ପ୍ରଦୂଷଣ ହେଲେ ବାୟୁମଣ୍ଡଳରେ ଅତ୍ୟଧିକ ରହୁଥିବା ଧୂଳିକୁ ସବୁଜ ବଳୟ ଧୂଳିମୁକ୍ତ କରିବାରେ ସାହାଯ୍ୟ କରିଥାଏ। ବୃକ୍ଷଲତା ଆମକୁ ଯକ୍ଷ୍ମାପରି ଦୁଃସାଧ୍ୟ ରୋଗ ତଥା ଶ୍ୱାସଜନିତ ରୋଗରୁ ରକ୍ଷା କରିଥାନ୍ତି। ପରିବେଶର ସୁରକ୍ଷା ପାଇଁ ଏକ ଭୂଖଣ୍ଡର ଏକ-ତୃତୀୟାଂଶ ବନ ଜଙ୍ଗଲରେ ଆଚ୍ଛାଦିତ ହେବା ଉଚିତ। ଏବେ ସରକାରୀ ହିସାବରେ ଆମ ଦେଶର ଭୂଖଣ୍ଡର ମାତ୍ର ଚଉଦଭାଗ ବନାଞ୍ଚଳ ଅଛି। ଦେଶର ଜଙ୍ଗଲ ପ୍ରତ୍ୟେହ ଧ୍ୱଂସ ହେବାରେ ଲାଗିଛି। ମରୁଭୂମିର ପରିସୀମା ପ୍ରାୟ ସାଢ଼େ ତିନିଲକ୍ଷ ବର୍ଗ କିଲୋମିଟରକୁ ବୃଦ୍ଧି ପାଇଲାଣି। ସାରା ପୃଥିବୀରେ ପ୍ରତି ମିନିଟରେ ତିରିଶ ହେକ୍ଟର ଜଙ୍ଗଲ ନଷ୍ଟ କରାଯାଉଛି ଅଥଚ ବନୀକରଣ କାର୍ଯ୍ୟ ସେତେଦୂର ସଫଳତା ହାସଲ କରିପାରୁ ନାହିଁ। ଗତ ଶହେ ବର୍ଷ ମଧ୍ୟରେ ବାୟୁମଣ୍ଡଳରେ - ଅଙ୍ଗାରକାମ୍ଳ ପଚିଶ ଭାଗ ବୃଦ୍ଧି ପାଇଛି ଫଳରେ ବାୟୁମଣ୍ଡଳର ତାପମାତ୍ରା କ୍ରମଶଃ ବଢୁଛି। ଏତଦ୍‌ବ୍ୟତୀତ ଜଙ୍ଗଲର ଆକର୍ଷଣ ଓ ଶୀତଳତା

ଯୋଗୁଁ ହେଉଥିବା ମୌସୁମୀ ବର୍ଷାର ପରିମାଣ ଶତକଡ଼ା ତିରିଶଭାଗ କମିଯାଇଛି । ଜଙ୍ଗଲ କଟା ଯୋଗୁଁ ଭୂଜଳସ୍ତର ହ୍ରାସ, ବନ୍ୟା ଓ ମୃତ୍ତିକାକ୍ଷୟ ଆଦି ପରିଲକ୍ଷିତ ହେଉଛି । ପ୍ରଫେସର ଟ.ଏମ୍. ଦାସଙ୍କ ମତାନୁଯାୟୀ ଗୋଟିଏ ବୃକ୍ଷ ତାର ପଚାଶ ବର୍ଷ ଜୀବନକାଳ ମଧ୍ୟରେ ଆମକୁ ୧୫.୭୦ ଲକ୍ଷ ଟଙ୍କାର ସେବା ଯୋଗାଇଥାଏ ।

କେନ୍ଦ୍ରୀୟ ପ୍ରଦୂଷଣ ବୋର୍ଡର ରିପୋର୍ଟ ଅନୁଯାୟୀ ଆମ ଦେଶରେ ୧୯୯୫ ସାଲରେ ୫୧,୭୭୯ ଜଣଙ୍କ ବାୟୁ ପ୍ରଦୂଷଣ ରୋଗରେ ମୃତ୍ୟୁ ଘଟିଛି । ବାୟୁମଣ୍ଡଳରେ ଓଜନସ୍ତର କମିବା ଫଳରେ ସୂର୍ଯ୍ୟଙ୍କ ପରାବାଇଗଣି କିରଣ ଚର୍ମ ତଥା କର୍କଟ ରୋଗ ସୃଷ୍ଟି କରୁଛି । ୧୯୯୦ ମସିହାରେ ଏକ ସର୍ବେକ୍ଷଣ ଅନୁଯାୟୀ ବିଶ୍ୱରୁ ୧୧୫ ଜାତିର ସ୍ତନ୍ୟପାୟୀ ପ୍ରାଣୀ ବିଲୋପ ହେଲେଣି । ପୃଥିବୀର ୨୨ଟି ଦେଶରେ ଜଳାଭାବ ଏବଂ ୧୮ଟି ଦେଶରେ ଅନାବୃଷ୍ଟି ଦେଖାଗଲାଣି । ଦିନ ଆସିବ, ଜଳପାଇଁ ବିଶ୍ୱମହାଯୁଦ୍ଧର ସମ୍ଭାବନାକୁ ଏଡ଼ାଇ ଦିଆଯାଇନପାରେ । ବନ୍ୟା, ମହାବାତ୍ୟା ଓ ସାମୁଦ୍ରିକ ଝଡ଼ରେ କୋଟି କୋଟି ଜନଜୀବନ ନଷ୍ଟ ହେଉଛି । ଓଡ଼ିଶାର ମହାବାତ୍ୟା ଏହାର ଜ୍ୱଳନ୍ତ ଦୃଷ୍ଟାନ୍ତ । ପ୍ରକୃତି ବ୍ୟାପକ ଅନିୟମିତତା ଯୋଗୁଁ ବାରମ୍ବାର ଭୂମିକମ୍ପ ସଂଘଟିତ ହେଉଛି । କେବଳ ଜବଲପୁରରେ ୧୯୯୭ ମସିହାରେ ଭୂମିକମ୍ପରେ ବ୍ୟାପକ କ୍ଷୟକ୍ଷତି ମଧ୍ୟରେ ୪୨୯ ଗ୍ରାମ ସମ୍ପୂର୍ଣ୍ଣ ଧ୍ୱଂସ ହୋଇଛି ।

## ଜନ ସଚେତନତା ସୃଷ୍ଟି କରିବା ପାଇଁ ଶିକ୍ଷାର ଭୂମିକା :

ଆଜିର ଶିକ୍ଷାର୍ଥୀ ଆସନ୍ତା କାଲିର ନାଗରିକ ଏବଂ ପରିବେଶର ରକ୍ଷଣାବେକ୍ଷଣ ଦାୟିତ୍ୱ ତା ହାତରେ ସମର୍ପଣ କଲେ କିଛିଟା ସୁଫଳ ଆଶା କରାଯାଇପାରେ । ଏଥିପାଇଁ ବାଲ୍ୟକାଳରୁ ମାନସିକ ପ୍ରସ୍ତୁତି ଆବଶ୍ୟକ ଏବଂ ପିଲାଙ୍କ ମନରେ ବୃକ୍ଷଲତା, ପଶୁପକ୍ଷୀଙ୍କ ପ୍ରତି ଘନିଷ୍ଠତା ତଥା ମମତା ସୃଷ୍ଟି କରିବା ଦରକାର । ଯଦିଓ ବିଦ୍ୟାଳୟ ପାଠ୍ୟକ୍ରମରେ ବିଜ୍ଞାନ ଶିକ୍ଷା ମାଧ୍ୟମରେ ଉଦ୍ଭିଦ ଓ ପ୍ରାଣୀଜଗତ ବିଷୟରେ ପଢ଼ାଯାଉଛି, ପିଲାଙ୍କ ଜ୍ଞାନ ପୁସ୍ତକ ଗତ ଓ ଶ୍ରେଣୀ କୋଠରୀର ସୀମା ମଧ୍ୟରେ ଆବଦ୍ଧ । ଏଣୁ ବାସ୍ତବ ଜ୍ଞାନ ଆହରଣ ପାଇଁ ବିଦ୍ୟାଳୟରେ ବିଭିନ୍ନ କାର୍ଯ୍ୟକ୍ରମ ପ୍ରସ୍ତୁତ କରାଯିବ । ବନ ଭ୍ରମଣ ଓ ପ୍ରକୃତି ପର୍ଯ୍ୟବେକ୍ଷଣ ଉପରେ ପ୍ରାଧାନ୍ୟ ଦିଆଯିବ । ଜଙ୍ଗଲର ବୃକ୍ଷଲତାର ପରିଚୟ କରାଇବା ସହ ସେଗୁଡ଼ିକର ଔଷଧୀୟ ଗୁଣ ତଥା ମଣିଷ ସମାଜ ପ୍ରତି ସେମାନଙ୍କ ଅବଦାନ ଉପରେ ସମ୍ୟକ୍ ଜ୍ଞାନ ଦିଆଯିବ । ପ୍ରକୃତି ପର୍ଯ୍ୟବେକ୍ଷଣ ପାଇଁ ସ୍କୁଲ ବଗିଚାର ଭୂମିକା ଅତି ଗୁରୁତ୍ୱପୂର୍ଣ୍ଣ । ସ୍କୁଲ ବଗିଚାରେ ପିଲା ବିଭିନ୍ନ ବୃକ୍ଷର ଚାରା ରୋପଣ କରିବ, ତା'ର ଯତ୍ନନେବା ସହ ବୃକ୍ଷର ଅଭିବୃଦ୍ଧି ଉପରେ ପର୍ଯ୍ୟବେକ୍ଷଣ ତଥା ପର୍ଯ୍ୟାଲୋଚନା କରିବା ଦ୍ୱାରା କ୍ରମଶଃ ତା'ର ଘନିଷ୍ଠତା ବୃଦ୍ଧି ପାଇବ । ବୃକ୍ଷର ବୃଦ୍ଧି, ରୋଗ ନେଇ କୌଣସି ସନ୍ଦେହ ସୃଷ୍ଟି ହେଲେ ବିଜ୍ଞାନ ଶ୍ରେଣୀରେ ତତ୍‌ସମ୍ବନ୍ଧୀୟ ଆଲୋଚନା କରାଯାଇ ପିଲାର ସନ୍ଦେହ ଦୂର କରାଯିବ । ଋତୁର ପରିବର୍ତ୍ତନରେ ଭୂପୃଷ୍ଠର ଦୃଶ୍ୟାବଳୀର ପରିବର୍ତ୍ତନକୁ

ପିଲାମାନେ ଲକ୍ଷ୍ୟ କରିବେ । ବସନ୍ତ ଋତୁର ଆଗମନରେ ପୃଥିବୀ ହୁଏ ବିଭିନ୍ନ ପୁଷ୍ପସମ୍ଭାରରେ ସୁଶୋଭିତ ଏବଂ ବର୍ଷାରେ ହୁଏ ଶ୍ୟାମଳ ସବୁଜିମାରେ ଆଚ୍ଛାଦିତ । ଏହାର ପର୍ଯ୍ୟବେକ୍ଷଣରେ ପିଲାର ସୌନ୍ଦର୍ଯ୍ୟଜ୍ଞାନର ବିକାଶ ଘଟିବ । ସ୍ଥିର ତଥା ପ୍ରବାହିତ ଜଳ, ମୃତ୍ତିକା ଓ ପ୍ରସ୍ତର ଉପରେ ପିଲାଙ୍କୁ ସମ୍ୟକ ଜ୍ଞାନ ଦିଆଯିବ ।

ପିଲାମାନଙ୍କୁ ଇସ୍ରାଏଲ ଓ ଚୀନ୍ ଦେଶର ଉଦାହରଣ ଦିଆଯାଇପାରେ । ଇସ୍ରାଏଲ୍ ବାସୀ ଗଛ ଲଗାଇ ଏକ ବିରାଟ ମରୁଭୂମିକୁ ଶ୍ୟାମଳ ସବୁଜିମାରେ ପରିଣତ କରିଛନ୍ତି । ଲୋକେ ଶିଶୁର ଜନ୍ମ ଓ ପରିବାରର କୌଣସି ବ୍ୟକ୍ତିର ସ୍ମରଣ ପାଇଁ ଗଛ ଲଗାନ୍ତି । ଚୀନ୍ ଦେଶରେ ମଧ୍ୟ ଏପରି ସାମାଜିକ ନୀତି ନିୟମ କରି ସବୁଜିମାର ପାଚେରି ଠିଆ କରିବାରେ ସମର୍ଥ ହୋଇଛନ୍ତି ।

ବିଦ୍ୟାଳୟ ସ୍ତରରେ ପିଲାଙ୍କୁ ଗୃହପାଳିତ ପଶୁ ଓ ପକ୍ଷୀଙ୍କ ଯତ୍ନନେବା, ସେମାନଙ୍କ ପ୍ରତି ଦୟା ପ୍ରଦର୍ଶନ କରିବା ଆଦି ଶିକ୍ଷା ଦିଆଯିବ । ପ୍ରତ୍ୟେକ ପିଲା ଗୋଟିଏ ପଶୁ ବା ପକ୍ଷୀ ପୋଷିବେ । ପିଲାଏ ପଶୁପକ୍ଷୀଙ୍କୁ ଲାଳନପାଳନ ତଥା ଯତ୍ନନେବା ଫଳରେ ଇତର ପ୍ରାଣୀଙ୍କ ପ୍ରତି ସେମାନଙ୍କ ଶ୍ରଦ୍ଧା କ୍ରମଶଃ ବୃଦ୍ଧି ପାଇବ । ସେମାନେ ପଶୁପକ୍ଷୀଙ୍କ ପ୍ରତି ନୃଶଂସ ବ୍ୟବହାର ପରିହାର କରିବେ । ପ୍ରତି ଛଅମାସରେ ଅନ୍ତତଃ ଥରେ ଲେଖାଏଁ ବିଦ୍ୟାଳୟର ପଶୁପକ୍ଷୀ ପ୍ରଦର୍ଶନୀ ହେବ ଏବଂ ପଶୁପକ୍ଷୀ ପାଳନର ଉତ୍କୃଷ୍ଟତା ବିଚାର କରି ପିଲାଙ୍କୁ ପୁରସ୍କୃତ କରାଯିବ । ଫଳରେ ସେମାନେ ପଶୁପକ୍ଷୀ ପାଳନ ପାଇଁ ଉତ୍ସାହିତ ହେବା ସହ ସେମାନଙ୍କ ପ୍ରତି ଦୟା ମନୋଭାବ ବୃଦ୍ଧି ପାଇବ, ଏବଂ ମନରୁ ନୃଶଂସ ଭାବ ଦୂରହେବ । ଭବିଷ୍ୟତ ବଂଶଧର ସ୍ରଷ୍ଟାଙ୍କ ଏହି ସୁନ୍ଦର ସୃଷ୍ଟିପ୍ରତି ଆକୃଷ୍ଟ ହେଲେ ବିଶ୍ୱକୁ ଧ୍ୱଂସ ମୁଖରୁ ରକ୍ଷା କରାଯାଇପାରିବ ।



(ସମାଜ, ଜୁଲାଇ ୯, ୨୦୦୦ ରେ ପ୍ରକାଶିତ)

# ଆମ ରାଜ୍ୟର ପ୍ରାଥମିକ ଶିକ୍ଷା

କିଛିଦିନ ତଳେ ପ୍ରାତଃ ଭ୍ରମଣରୁ ଫେରୁଥାଏ । ଓଡ଼ିଆ ଘରର ଦୁଇଟି ଛୋଟ ଝିଅ ରିକ୍ସାରେ ଯାଉଥାନ୍ତି । ଝିଅ ଦୁଇଟିର ବୟସ ସାତ, ଆଠ ବର୍ଷରୁ ଅଧିକ ନୁହେଁ । ସେମାନଙ୍କ ବେଶଭୂଷା, କଥାବାର୍ତ୍ତାରୁ ଜଣାପଡୁଥାଏ ସେମାନେ ଇଂରାଜୀ ଓ ହିନ୍ଦି ମିଶାମିଶି ଭାଷାରେ କଥା ହେଉଥାନ୍ତି । କଥା ପ୍ରସଙ୍ଗରେ ଜଣେ ଝିଅ 'ପ୍ରୋବ୍ଲେମ୍' ଶବ୍ଦଟି କହିଲା । ରିକ୍ସାବାଲା ଏ ଶବ୍ଦଟି ଶୁଣି ଟିକିଏ ମୃଦୁ ହସି ଦେଇ ଶବ୍ଦଟିର ପୁନରାବୃତ୍ତି କଲା । ସଙ୍ଗେ ସଙ୍ଗେ ଝିଅଟି କହି ପକେଇଲା, 'ପ୍ରୋବ୍ଲେମ୍' ଶବ୍ଦ ଆଛା ସେ ବୋଲୋ । ତୁମ୍ ଇଂଲିଶ୍ ପଢୋ ।" ମୁଁ ସେଇ ଛୋଟ ଝିଅ ଓ ରିକ୍ସାବାଲାର ବାର୍ତ୍ତାଳାପ ମନଦେଇ ଶୁଣୁଥାଏ । ରିକ୍ସାବାଲା ମୋତେ ଦେଖି ହସି ହସି କହିଲା, "ଆଜ୍ଞା, ଏ ପିଲାଙ୍କ କଥା ଶୁଣନ୍ତୁ ଏବଂ ଏଇ ବୟସର ସରକାରୀ ସ୍କୁଲର ପିଲାଙ୍କ କଥା ଦେଖନ୍ତୁ । ସରକାରୀ ସ୍କୁଲର ମାଷ୍ଟରମାନେ ଖାଲି ଦରମା ନେଉଛନ୍ତି, ପାଠପଢା ହେଉନାହିଁ ।" ରିକ୍ସାବାଲାର ଏକଥା ଶୁଣି ହତବାକ୍ ହୋଇଗଲି । ତାକୁ ବା କି ଉତ୍ତର ଦେବି । ଜଣେ ଅପାଠୁଆ ସାଧାରଣ ଲୋକର ଆମ ପ୍ରାଥମିକ ଶିକ୍ଷାପ୍ରତି ଏ ଧାରଣା ।

ଅନ୍ୟ ଜଣକଠାରୁ ଶୁଣିଲି, କେତେଜଣ ରିକ୍ସାବାଲା ବି ମାସକୁ ଦୁଇ, ତିନି ଶହ ଟଙ୍କା ଖର୍ଚ୍ଚ କରି ନିଜ ପିଲାଙ୍କୁ ଇଂରାଜୀ ମାଧ୍ୟମ ପ୍ରାଥମିକ ବିଦ୍ୟାଳୟରେ ପଢାଉଛନ୍ତି । ଇଂରାଜୀ ମାଧ୍ୟମ ବିଦ୍ୟାଳୟ ସହ ସରକାରୀ ସ୍କୁଲଗୁଡ଼ିକୁ ସମକକ୍ଷ କରିବା ପାଇଁ ସରକାର ଦ୍ୱିତୀୟ ଶ୍ରେଣୀରୁ ଇଂରାଜୀ ଭାଷା ଶିକ୍ଷା ସିନା ପ୍ରଚଳନ କଲେ କିନ୍ତୁ ସରକାରୀ ବିଦ୍ୟାଳୟରେ ସେ ବାତାବରଣ କାହିଁ ବା ଇଂରାଜୀ ଭାଷା ଶିକ୍ଷା ଦେବା ପାଇଁ ସେପରି ଶିକ୍ଷକ କାହାନ୍ତି ? କେବଳ ଇଂରାଜୀ ଶିକ୍ଷାଦାନ କଥା ନୁହେଁ, ଅନ୍ୟାନ୍ୟ ବିଷୟରେ ମଧ୍ୟ ଆମ ପିଲାଏ ଦୁର୍ବଳ । ସପ୍ତମ ଶ୍ରେଣୀ ପାସ୍ କଲାପରେ ବି ସେମାନଙ୍କ ଓଡ଼ିଆ ଭାଷାର ଯୁକ୍ତାକ୍ଷର ଓ ଗଣିତର ଚାରିସୂତ୍ର ଉପରେ ପୂର୍ଣ୍ଣ ପରିଚିତ ନୁହନ୍ତି । ଏପରିସ୍ଥଳେ, ଅଭିଭାବକମାନଙ୍କ ସରକାରୀ ବିଦ୍ୟାଳୟ ପ୍ରତି ଆସ୍ଥା ଆସିବ କିପରି ?

ଅର୍ଦ୍ଧଶତାବ୍ଦୀ ତଳର ପ୍ରାକ୍-ସ୍ୱାଧୀନତା କାଳର ପ୍ରାଥମିକ ସ୍କୁଲ ଓ ପାଠପଢା କଥା କହିଲେ ଦେଖି ନଥିବା ପରବର୍ତ୍ତୀ କାଳର ଲୋକେ ବିଶ୍ୱାସ ବି କରିବେ ନାହିଁ । ସେତେବେଳେ ସ୍କୁଲ ଗୃହ ଓ ବଗିଚାର ମନୋରମ ଦୃଶ୍ୟ ପିଲାଙ୍କୁ ବିଶେଷ ଆକର୍ଷଣ କରୁଥିଲା । ସ୍କୁଲ ଗୃହର କାନ୍ଥରେ ମହାପୁରୁଷମାନଙ୍କ ଫଟୋଚିତ୍ର ଅଙ୍କାଯିବା ସହ ବଡ଼ ବଡ଼ କବି ଓ ଲେଖକମାନଙ୍କ ଲେଖାର ଆଦର୍ଶବାକ୍ୟ, ନୀତିବାକ୍ୟ ଲେଖାଯାଉଥିଲା । ବିଦ୍ୟାଳୟ ପ୍ରାଙ୍ଗଣରେ ନିଜ ଜିଲ୍ଲା, ଓଡ଼ିଶା ଓ ଭାରତବର୍ଷର ରିଲିଫ୍

ମାନଚିତ୍ର ତିଆରି କରି ପିଲାଙ୍କୁ ପ୍ରାକୃତିକ ଭୂଗୋଳ ଉପରେ ପ୍ରତ୍ୟକ୍ଷ ଜ୍ଞାନ ଦିଆଯାଉଥିଲା । ପର୍ବତଶ୍ରେଣୀ, ମରୁଭୂମି, ହ୍ରଦ ବ୍ୟତୀତ ଚିରସ୍ରୋତା ନଦୀଗୁଡ଼ିକ ସାଗରଅଭିମୁଖୀ ହୋଇ ବହିଯାଉଥିବାର ଦୃଶ୍ୟ ଦେଖି ପିଲାମାନେ ବାସ୍ତବ ଜ୍ଞାନ ପାଉଥିଲେ । ଫଳ, ଫୁଲରେଭରା ଉଦ୍ୟାନରେ ପିଲାଙ୍କୁ ବସାଇ ଗୁରୁଜୀ 'ଆମ ସ୍କୁଲ ବଗିଚା', 'ପନିପରିବା ଚାଷ', 'କୃଷକର ଆତ୍ମକାହାଣୀ' ଆଦି ରଚନା ଲେଖିବାକୁ ଦେଉଥିଲେ । ଭାଷା ନିଜର କିନ୍ତୁ ପ୍ରକୃତି ହିଁ ଯୋଗାଉଥିଲା ଭାବ । ଅନେକ ସମୟରେ ଉଦ୍ୟାନ ମଧ୍ୟସ୍ଥ ବୃକ୍ଷତଳେ ବସି ଅଙ୍କ ଓ ବିଜ୍ଞାନ ପଢାଯାଏ । ଅଙ୍କ କଷା ଯାଉଥିଲା ବଗିଚାରୁ ଆଦାୟ ପନିପରିବାର ବିକ୍ରି ଲବ୍ଧ ଟଙ୍କା ପଇସା ଉପରେ । ଉଦ୍ୟାନ ବିଶେଷତଃ ଉଦ୍ଭିଦ ଓ କୃଷିବିଜ୍ଞାନ ଶିକ୍ଷାପାଇଁ ଏକ ଗବେଷଣାଗାରର କାମ କରୁଥିଲା । ଗୁରୁଜୀମାନଙ୍କ ବିଦ୍ୟା ପ୍ରତି କି ମମତା, ଶିକ୍ଷାଦାନ ପ୍ରତି କି ଆନ୍ତରିକତା ଓ ପିଲାଙ୍କ ପ୍ରତି କିପରି ସ୍ନେହ, ସହାନୁଭୂତି ଥିଲା ଏଥିରୁ ସହଜରେ ଅନୁମିତ ହୁଏ । ସେମାନେ ବିଦ୍ୟାଳୟକୁ ନିଜର ଗୃହ ଓ ପିଲାମାନଙ୍କୁ ନିଜ ପରିବାର ବୋଲି ବିବେଚନା କରୁଥିଲେ । ସେ ସବୁ ଗଲା କୁଆଡ଼େ ? ଏବେ ପ୍ରାଥମିକ ସ୍କୁଲ ଭିତରକୁ ପଶିଗଲେ ଦେଖିବେ ଅତୀତର ଫଳପୁଷ୍ପଭରା ଉଦ୍ୟାନ ଟାଙ୍ଗରା ଭୂଇଁରେ ପରିଣତ ହୋଇଛି । ଶିକ୍ଷକମାନଙ୍କ ମଧ୍ୟରୁ ପାଳିକରି ସ୍କୁଲରୁ ଅନୁପସ୍ଥିତ ରହୁଛନ୍ତି । କିଏ ବାହାନା କରି ସ୍କୁଲରୁ ଅନୁପସ୍ଥିତ ରହୁଛନ୍ତି ତ, କିଏ ନିଜ ପ୍ରିୟ ନେତାଙ୍କ ଗଛରେ ଗୋଡାଇ ସଭା ସମିତିରେ ଯୋଗ ଦେଇଛି । ଯିଏ ଏମାନଙ୍କ ବିରୋଧରେ କିଛି କହିବ ସେ ନେତାଙ୍କ ଶରବ୍ୟ ହେବ । ଏଣୁ ସାଧାରଣ ଜନତାର ପ୍ରାଥମିକ ବିଦ୍ୟାଳୟର ଶିକ୍ଷା ପ୍ରତି ଆସ୍ଥା ତୁଟିବା ସ୍ୱାଭାବିକ ।

ଅନ୍ୟ ପକ୍ଷରେ, ସରକାର ପ୍ରାଥମିକ ଶିକ୍ଷକମାନଙ୍କ ଜରିଆରେ ସବୁ ଯୋଜନା କାର୍ଯ୍ୟକାରୀ କରିବାକୁ ଚାହୁଁଛନ୍ତି । ଜନଗଣନା, ଭୋଟର ତାଲିକା ପ୍ରସ୍ତୁତି, ସଂଶୋଧନ, ଭୋଟର ପରିଚୟ ପତ୍ର ପ୍ରସ୍ତୁତି ଏପରିକି ପରିବାର କଲ୍ୟାଣ ଯୋଜନା ବି ପ୍ରାଥମିକ ଶିକ୍ଷକମାନଙ୍କ ଦ୍ୱାରା ସରକାର କାର୍ଯ୍ୟକାରୀ କରନ୍ତି । ଏପରିସ୍ଥଳେ, ପ୍ରାଥମିକ ସ୍କୁଲଗୁଡ଼ିକରେ ପାଠପଢା କିପରି ବାଧାପ୍ରାପ୍ତ ହେଉଛି ଏ ଦିଗରେ ସରକାରଙ୍କ ଧ୍ୟାନ ନାହିଁ । ଅପର ଦିଗରେ, ଇଂରାଜୀ ମାଧ୍ୟମ ବିଦ୍ୟାଳୟରେ ବର୍ଷସାରା ଅଧ୍ୟାପନା ବ୍ୟତୀତ ଅନ୍ୟ କୌଣସି କାମ ନାହିଁ । ସେମାନେ ଅଳ୍ପ ଦରମା ପାଇଲେ ବି ନିୟମିତ ସ୍କୁଲକୁ ଯାଆନ୍ତି ଓ ପାଠ ପଢ଼ାନ୍ତି । କର୍ତ୍ତବ୍ୟରେ ତ୍ରୁଟି କଲେ କାର୍ଯ୍ୟରୁ ବହିଷ୍କାର ହେବା ଭୟ ଥାଏ । ଏଣୁ ସେମାନେ ସବୁକାମ ନିୟମିତ ଓ ଶୃଙ୍ଖଳିତ ଭାବେ କରନ୍ତି ।

ସ୍କୁଲ ବିଭାଗର ପରିଦର୍ଶନ କଥା ନ କହିବା ଭଲ । ଆଗେ ଗୋଟିଏ ଗୋଟିଏ ପ୍ରାଥମିକ ବିଦ୍ୟାଳୟ ବର୍ଷକୁ ଦଶ, ବାରଥର ପରିଦର୍ଶନ ହେବା ନଜିର ଅଛି । ଯେତେବେଳେ ଯିବା, ଆସିବା ପାଇଁ ରାସ୍ତାଘାଟ ନଥିଲା, ଯାନ ବାହନର ସୁବିଧା ନଥିଲା, ସେତେବେଳେ ପରିଦର୍ଶକବୃନ୍ଦ ନିପଟ ପଲ୍ଲୀକୁ ଯାଇ ବାରମ୍ବାର ସ୍କୁଲ ପରିଦର୍ଶନ କରୁଥିଲେ । ଶିକ୍ଷକମାନଙ୍କୁ ଅଧ୍ୟାପନା ଦିଗରେ ଦିଗ୍‌ଦର୍ଶନ ଦେଉଥିଲେ । ଏପରିକି

ସୁଦୂର ଇଂଲଣ୍ଡର ଗୋରାସାହେବ ଏଜେନ୍‌ସି ଇନିସ୍‌ପେକ୍ଟର ଏଚ୍.ଡି.ପି. ହାତୀରେ ବସି ଅଗମ୍ୟ ଅଞ୍ଚଳରେ ଥିବା ପ୍ରାଥମିକ ବିଦ୍ୟାଳୟଗୁଡ଼ିକ ପରିଦର୍ଶନ କରୁଥିଲେ। ସେତେବେଳେ ଶିକ୍ଷକମାନଙ୍କୁ ଭଲକାମ ପାଇଁ ପରିଦର୍ଶନ ସ୍ଥଳରେ ପୁରସ୍କାର ଓ ଭୁଲପାଇଁ ଦଣ୍ଡ ପାଇଲେ କେହି ପିଠିରେ ପଡୁ ନଥିଲେ। ଫଳରେ ଶିକ୍ଷକମାନେ ପରିଦର୍ଶକଙ୍କୁ ଭଲକାମ ଦେଖାଇବା ପାଇଁ ସର୍ବଦା ତତ୍ପର ଥିଲେ। ଏବେ ପରିଦର୍ଶନ ପୋଥିଗତ ହେଲାଣି। ବର୍ଷରେ ଥରେ ସ୍କୁଲ ପରିସର ବୁଲି ଆସିଲେ କାମ ଫତେ। ସେମାନଙ୍କ କାମ କିଏ ବା ତଦାରଖ କରୁଛି। ଆଗେ ତଳ ହାକିମଙ୍କ ପରିଦର୍ଶନ ନୋଟକୁ ଉପର ହାକିମ ଟିକିନିଖି ପଢ଼ି ତା ଉପରେ ମନ୍ତବ୍ୟ ଦେଉଥିଲେ। ପରିଦର୍ଶନରେ କି ତ୍ରୁଟି ରହିଲା ଦର୍ଶାଉଥିଲେ ଫଳରେ ତଳ ହାକିମମାନେ ବି ସତର୍କ ହେଉଥିଲେ। ଏବେ ଶାସନ ଗଲାଣି ହୁଗୁଳି। ଅନ୍ୟ ପକ୍ଷରେ, ଶିକ୍ଷା ବିଭାଗୀୟ ହାକିମଙ୍କ ସଭା, ସମିତିରେ ଯୋଗଦେବା, ଅଫିସରେ ଫାଇଲ ଚାଷ କରିବା ପାଇଁ ତର ନାହିଁ। ପରିଦର୍ଶନ ନାମ ଗୌଣରେ ପରିଣତ ହେଲାଣି।

ସରକାର ଗତ ପଚାଶ ବର୍ଷରେ ପ୍ରାଥମିକ ଶିକ୍ଷାକୁ ଅବହେଳା କରିବାର ଫଳ ଏବେ ଦେଶ ଭୋଗ କରୁଛି। ସ୍ୱାଧୀନତାର ଅର୍ଦ୍ଧ ଶତାବ୍ଦୀ ପରେ ସରକାରୀ ହିସାବ ଅନୁଯାୟୀ ଦେଶରେ ଶତକଡ଼ା ଚାଳିଶ ଜଣ ନିରକ୍ଷର। କେବଳ ବିଶ୍ୱବ୍ୟାଙ୍କରୁ ଋଣ ଆଣି ଟଙ୍କା ଖର୍ଚ୍ଚ କଲେ ପ୍ରାଥମିକ ଶିକ୍ଷାର ବିକାଶ ହେବନି ବା ସରକାରୀ ପ୍ରାଥମିକ ସ୍କୁଲ ପ୍ରତି ଜନତାର ଆସ୍ଥା ବଢ଼ିବ ନାହିଁ। ଏଥିପାଇଁ ସରକାରଙ୍କ ଯୋଜନା ତଥା ଏକ ପ୍ରକାର ପାଠ୍ୟକ୍ରମ ସାରା ଦେଶରେ ପ୍ରଚଳନ, ଶିକ୍ଷକମାନଙ୍କ ଶିକ୍ଷାଦାନ ପ୍ରତି ଆନ୍ତରିକତା, ଜନ ସହଯୋଗ ସହ ଶିକ୍ଷାନୁଷ୍ଠାନଗୁଡ଼ିକୁ ରାଜନୈତିକ ହସ୍ତକ୍ଷେପରୁ ମୁକ୍ତ ରଖିବା ନିତାନ୍ତ ଆବଶ୍ୟକ।



(ସମାଜ, ଜାନୁୟାରୀ ୯, ୨୦୦୨ରେ ପ୍ରକାଶିତ)

# ଶିକ୍ଷା, ଶିକ୍ଷକ ଓ ସାମାଜିକ ସମସ୍ୟା

୧

## ବର୍ତ୍ତମାନର ଶିକ୍ଷା ପଦ୍ଧତି :

ଦେଶର ସ୍ୱାଧୀନତା ପ୍ରାପ୍ତି ଦିନଠାରୁ ଇଂରେଜ ମାନଙ୍କ ପ୍ରଚଳିତ ଶିକ୍ଷାକୁ ବହୁଳ ଭାବରେ ସମାଲୋଚନା କରି ଦେଶର ପରିବର୍ତ୍ତିତ ପରିପ୍ରେକ୍ଷୀରେ ଏହାର ପରିବର୍ତ୍ତନ ଉପରେ ବିଭିନ୍ନ ମତାମତ ପ୍ରକାଶ ତଥା ପ୍ରସ୍ତାବ ମାନ ଆଗତ କରାଯାଇଛି । ଶିକ୍ଷା କମିଶନ ବସାଯାଇଛି କିନ୍ତୁ ସେମାନଙ୍କ ସୁପାରିଶ ଗୁଡ଼ିକ କାର୍ଯ୍ୟକାରୀ କରାଯାଇ ପାରିନାହିଁ । ପୂରାତନ ପଦ୍ଧତିର ପରିବର୍ତ୍ତନ ପାଇଁ ପରୀକ୍ଷା ସ୍ୱରୂପ ନୂତନ କାର୍ଯ୍ୟକ୍ରମ ନିଆଯାଉଛି କିନ୍ତୁ ଅର୍ଥାଭାବ ଓ କାର୍ଯ୍ୟକାରୀ କରିବା ବ୍ୟକ୍ତି ତଥା ସଂସ୍ଥାର ଆନ୍ତରିକତା ଅଭାବ ଯୋଗୁଁ ବିଭିନ୍ନ ଦୋଷ ତ୍ରୁଟି ମତ ପରିଲକ୍ଷିତ ହେଉଛି ଏବଂ ଏହି କାର୍ଯ୍ୟକ୍ରମକୁ ବନ୍ଦ କରି ଦିଆଯାଉଛି । ବେସିକ୍ ଶିକ୍ଷା ଏହାର ଜ୍ୱଳନ୍ତ ଉଦାହରଣ । ଦେଶ ସ୍ୱାଧୀନ ହେବାର ଅଠତିରିଶ ବର୍ଷକାଳ ଅତିବାହିତ ହୋଇଗଲା । ଆମେ 'ଆବଶ୍ୟକ', 'ଉଚିତ', 'ଦରକାର' ଏହି ଭାଷା ବ୍ୟବହାର କରିବାରେ ଲାଗୁଛୁ ଏବଂ ପାଶ୍ଚାତ୍ୟ ଶିକ୍ଷାବିତ୍ ମାନଙ୍କ ଲେଖାର ଉଦ୍ଧୃତାଂଶ ଦେଇ ସଭା ସମିତିରେ ଭାଷଣ, ଶ୍ରେଣୀ କୋଠରୀ ମଧ୍ୟରେ ବକ୍ତୃତା ଓ ଭାଷାର ଆବରଣ ମଧ୍ୟରେ ପ୍ରବନ୍ଧମାନ ପ୍ରକାଶ କରି ଆସିଛୁଁ । କୌଣସି ଏକ ନିର୍ଦ୍ଦିଷ୍ଟ ସିଦ୍ଧାନ୍ତରେ ଉପନୀତ ହୋଇପାରୁନାହୁଁ ।

ଶିକ୍ଷା ସହ ସାଧାରଣ ନାଗରିକ ଜୀବନର ସମନ୍ୱୟ ଓ ପର୍ଯ୍ୟନ୍ତ ରକ୍ଷା କରାଯାଇ ପାରିନାହିଁ । ଏ ଦେଶର ନାଗରିକ ମାନଙ୍କ ଦେଶାତ୍ମବୋଧ, କର୍ତ୍ତବ୍ୟ ପ୍ରତି ଆନ୍ତରିକତା ଏକାନ୍ତ ଅଭାବ ପରିଲକ୍ଷିତ ହେଉଛି । ଯେନ ତେନ ପ୍ରକାରେଣ ସମୟ କଟିଯାଉ, ଅର୍ଥ ଉପାର୍ଜନ କରି ଗୁଜୁରାଣ ମେଣ୍ଟୁ ଓ ପରିବାର ପରିପୁଷ୍ଟ ହୁଅନ୍ତୁ, ଏହା ହିଁ ଲକ୍ଷ୍ୟ । ଇଂରେଜ ଶାସନର ଅମଳରେ ଦଣ୍ଡ ଭୟରେ ହେଉ ବା ନୈତିକତା ଦୃଷ୍ଟିରେ ହେଉ, କର୍ତ୍ତବ୍ୟ ପ୍ରତି ଆନ୍ତରିକତା ପ୍ରକାଶ ପାଉଥିଲା । ସ୍ୱାଧୀନତା ପ୍ରାପ୍ତିପରେ ଯଦିଓ ତାହା ସ୍ୱତଃ ପ୍ରବୃତ୍ତ ଭାବେ ଅଧିକ ହେବା କଥା, ଫଳତଃ ଓଲଟା ଦେଖାଯାଉଛି । ଦେଶ ଧନୀ ଓ ଦରିଦ୍ର ମଧ୍ୟରେ ଥିବା ଅସମତା କ୍ରମେ ହ୍ରାସ ପାଉଥିବା ସ୍ଥଳେ ଶିକ୍ଷିତ ଓ ଅଶିକ୍ଷିତ ମଧ୍ୟରେ ଏକ କାଳ୍ପନିକ ପାଚେରୀ ଗଢ଼ିଉଠିଛି । ଶାସକ ଗୋଷ୍ଠୀ ସବୁବେଳେ ଶାସିତ ଗୋଷ୍ଠୀଙ୍କ ଠାରୁ ଦୂରେଇ ରହିବାକୁ ଚେଷ୍ଟା କରୁଛନ୍ତି । ଶିକ୍ଷକଗୋଷ୍ଠୀ ମଧ୍ୟ କୌଣସି ସ୍ୱତନ୍ତ୍ରତା ରକ୍ଷା କରିପାରି ନାହାନ୍ତି । ତେବେ ଗତ ଅଠତିରିଶ ବର୍ଷରେ ଏକ ଗଣତନ୍ତ୍ର ଦେଶର ଶିକ୍ଷା ନାଗରିକ ମାନଙ୍କ ଉପରେ କି ପ୍ରକାର ପ୍ରଭାବ

ପକେଇଛି, ଏଥିରୁ ଦେଶପ୍ରେମୀ ନାଗରିକ ଗଣ ବିଚାର କରିବେ ।

**ଶିକ୍ଷାର ଆଭିମୁଖ୍ୟ କ'ଣ ହେବା ଆବଶ୍ୟକ :**

ଆମର ଶିକ୍ଷା ଦେଶ ଅଖଣ୍ଡତା ରକ୍ଷା, ଦେଶାତ୍ମବୋଧ, କର୍ତ୍ତବ୍ୟପରାୟଣତା ଓ ଆତ୍ମନିର୍ଭରଶୀଳତା ବୃଦ୍ଧି କରିବାରେ କିପରି ସହାୟକ ହେବ, ତଦନୁଯାୟୀ ପାଠ୍ୟସୂଚୀ ପ୍ରସ୍ତୁତି ହେଉ ଓ ଗଣତନ୍ତ୍ରର ସୁରକ୍ଷା ପାଇଁ ଏଗୁଡ଼ିକର ଆବଶ୍ୟକତା ଯେପରି ଭବିଷ୍ୟତ ବଂଶଧରମାନଙ୍କ ମନରେ ଗଭୀର ରେଖାପାତ କରିବ, ସେହି ଲକ୍ଷ୍ୟରେ ଶିକ୍ଷାପଦ୍ଧତିର ପୁନଃ ବିନ୍ୟାସ କରାଯାଉ । ସାହିତ୍ୟ ଓ ସମାଜିକ ବିଜ୍ଞାନର ଆଭିମୁଖ୍ୟ ତଦନୁଯାୟୀ ପରିବର୍ତ୍ତନ କରିବାକୁ ହେବ । ଏ ଦେଶ ଆମର ଓ ଏହାର ସ୍ୱାଧୀନତାକୁ ରକ୍ଷା କରିବା ଆମର କର୍ତ୍ତବ୍ୟ । ବିଦ୍ୟାଳୟର ପ୍ରାର୍ଥନା ସଭାରେ ଅନେକ ଦିନ ପିଲାମାନଙ୍କ ଏ ଦେଶର ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ମାନଙ୍କ ଜୀବନୀ ଓ ଦେଶର ସ୍ୱାଧୀନତା ପାଇଁ ସେମାନଙ୍କ ଅବଦାନ ସମ୍ବନ୍ଧରେ ପଚରାଯାଏ । ପିଲାମାନଙ୍କ ଏ ପ୍ରଶ୍ନଗୁଡ଼ିକର ଉତ୍ତର ଯେ କେତେ ନୈରାଶ୍ୟଜନକ, ଯେ ଶୁଣିବ ସେ କେବଳ ଅନୁଭବ କରିବ । ଏ ଦେଶର ଶତକଡ଼ା ଅଶୀ ଭାଗ ପିଲାଙ୍କ ଶିକ୍ଷା ମାଧ୍ୟମିକ ସ୍ତରରୁ ହିଁ ଶେଷ ହୋଇଯାଏ । ସେମାନେ ଏ ଦେଶ ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ଯେଉଁମାନେ କି ନଜର ଲୁହ ଓ ଲହୁ ଢ଼ାଳି ଏ ଦେଶକୁ ବିଦେଶୀ ଶାସନ କବଳରୁ ମୁକ୍ତ କରିଛନ୍ତି; ସେମାନଙ୍କ ସମ୍ବନ୍ଧରେ ଆଦୌ ଜାଣନ୍ତି ନାହିଁ । ତେବେ ସେମାନଙ୍କ ମନରେ ଦେଶାତ୍ମବୋଧ ଜାଗ୍ରତ ହେବ କିପରି ? ଅଥଚ ଆମେ ଦଶମ ଶ୍ରେଣୀରେ ପିଲାମାନଙ୍କୁ ଇତିହାସରେ ଜର୍ମାନୀ ଓ ଇଟାଲୀର ଏକତ୍ରୀକରଣ ଶିକ୍ଷାଦେଇ 'ମାଜିନି ଓ ବିସମାର୍କଙ୍କ ନାମ ମୁଖସ୍ଥ କରାଉଛୁ । ମାଧ୍ୟମିକ ଶିକ୍ଷା ଶେଷ କରି ଯେଉଁମାନେ ଆସନ୍ତାକାଲି ଏ ଦେଶର ନାଗରିକ ହେବେ, ଦେଶପ୍ରତି ସେମାନଙ୍କ ଯେ କିପରି ଆନୁଗତ୍ୟ ପ୍ରକାଶ ପାଇବ ଏଥିରୁ ସହଜେ ଅନୁମେୟ । ଏ ହେଲା ଆମର ଶିକ୍ଷା । ଆମେ ଅଗଣିତ ଅଶିକ୍ଷିତ ନରନାରୀଙ୍କୁ ବା ଦୋଷ ଦେବା କାହିଁକି ? ସେମାନେ ତ ସହଜେ ନ ଜାଣିବା କଥା । ଏ ଦେଶକୁ ବିପଦାପନ୍ନ କରି ଗୁପ୍ତଚର ବୃତ୍ତି ଦ୍ୱାରା ଅର୍ଥ ଉପାର୍ଜନ କରିବା ଓ ନିଜକୁ ପରିପୁଷ୍ଟ କରିବାରେ ଏ ଦେଶର ଶିକ୍ଷିତ ଶ୍ରେଣୀ ପଛଘୁଞ୍ଚା ଦେଉନଥିବାର ଉଦାହରଣ ନିକଟ ଅତୀତର ଜଘନ୍ୟ ଘଟଣା ସ୍ପଷ୍ଟ ପ୍ରମାଣ ଦିଏ । ଏଣୁ ଏ ଦେଶର ଶିକ୍ଷା ନାଗରିକ ମାନଙ୍କ ଉପରେ କି ପ୍ରକାର ପ୍ରଭାବ ପକାଇଛି, ତାହା ପ୍ରଣିଧାନ ଯୋଗ୍ୟ ।

ବର୍ତ୍ତମାନର ଶିକ୍ଷା ହିଁ ଆମକୁ ସମାଜ ଠାରୁ ସ୍ୱତନ୍ତ୍ର ରଖୁଛି । ଶିକ୍ଷିତ ଓ ଅଶିକ୍ଷିତ ମଧ୍ୟରେ ଶ୍ରେଣୀ ବିଭେଦ ସୃଷ୍ଟି କରୁଛି । ଶିକ୍ଷକ ଶ୍ରେଣୀ ମଧ୍ୟ ଏହି ଗୋଷ୍ଠୀର ଅନ୍ତର୍ଭୁକ୍ତ । ଶିକ୍ଷକଶ୍ରେଣୀ ଯଦି ଔପନିବେଶିକ ଶିକ୍ଷାର ବିଚାରଧାରାକୁ ପରିବର୍ତ୍ତନ ନ କରନ୍ତି, ତେବେ ସେମାନେ ଦେଶର ସାମାଜିକ ପରିସ୍ଥିତିକୁ ଆଦୌ ଅନୁଭବ କରିପାରିବେ ନାହିଁ ଓ ଗଣତାନ୍ତ୍ରିକ ଚିନ୍ତାଧାରାରେ ଶିକ୍ଷାକୁ ଆଗେଇ ନେବାରେ ଅନୁକୂଳ ବାତାବରଣ ସୃଷ୍ଟି କରିପାରିବେ ନାହିଁ ।

## ବର୍ତ୍ତମାନର ସମସ୍ୟା ଓ ଶିକ୍ଷକ :

ନୂତନ ଗବେଷଣା ଫଳରେ ଜ୍ଞାନ-ରାଜ୍ୟରେ ବିସ୍ଫୋରଣ ଘଟୁଛି । ପୁରାତନ ଚିନ୍ତାଧାରାକୁ ମଣିଷ ଆଉ ଅନ୍ଧ ଭାବରେ ଗ୍ରହଣ କରିବାକୁ ରାଜି ନୁହେଁ । ବିଚାର ଓ ଯୁକ୍ତିଦ୍ୱାରା ସତ୍ୟାସତ୍ୟ ପ୍ରମାଣ କରିବାକୁ ସବୁବେଳେ ବ୍ୟଗ୍ରତା ପ୍ରକାଶ ପାଉଛି । ଅନ୍ୟପକ୍ଷରେ, ଗଣତାନ୍ତ୍ରିକ ଚିନ୍ତାଧାରା ତଥା ଜାତୀୟତା ଭାବ ମଣିଷକୁ ବିଶେଷ ଭାବରେ ପ୍ରଭାବିତ କରୁଛି । ଏଣୁ ବର୍ତ୍ତମାନର ଶିକ୍ଷକମାନଙ୍କୁ ଏହି ଆହ୍ୱାନର ସମ୍ମୁଖୀନ ହେବାପାଇଁ ଅହରହ ଚେଷ୍ଟା କରିବାକୁ ହେବ । ପ୍ରତ୍ୟହ ଘଟୁଥିବା ପରିବର୍ତ୍ତନ ସହ ଶିକ୍ଷକ ପାଦ ମିଳେଇ ନଚାଲିଲେ ଛାତ୍ରଛାତ୍ରୀଙ୍କୁ ନେତୃତ୍ୱ ଦେବା ସମ୍ଭବପର ହେବନାହିଁ । ଛାତ୍ରଛାତ୍ରୀ ଆଗେଇ ଯିବେ ଓ ଶିକ୍ଷକ ପଛରେ ପଡ଼ିରହିବେ ।

ଶିକ୍ଷକ ସମାଜର ଅଙ୍ଗ ବିଶେଷ । ଏଣୁ ସେମାନେ ଅନ୍ୟାନ୍ୟ ଶିକ୍ଷିତ ତଥା କର୍ମଚାରୀ ଗୋଷ୍ଠୀଙ୍କ ପରି ନିଜକୁ 'ବାବୁ' ବୋଲି ମନେ କରନ୍ତୁ ନାହିଁ । ସେମାନଙ୍କୁ ସମାଜକୁ ବଦଳାଇବା ଦିଗରେ ନେତୃତ୍ୱ ଦେବାକୁ ହେବ । ଶିକ୍ଷାନୁଷ୍ଠାନ ଓ ସମାଜ ମଧ୍ୟରେ ସମ୍ବନ୍ଧ ଘନିଷ୍ଠ କରି ଉଭୟର ଦ୍ୱାର ଉଭୟଙ୍କ ପାଇଁ ଉନ୍ମୁକ୍ତ କରିବାକୁ ପଡ଼ିବ । ଶିକ୍ଷକମାନଙ୍କ ଅବସର ସମୟ ଅନେକ । କେହି କାହାରିକୁ ଜୋର ଜବରଦସ୍ତି ଦେଶ ସେବା କାର୍ଯ୍ୟରେ ଲଗାଇ ନପାରେ । ସେମାନେ ଯଦି ସ୍ୱତଃପ୍ରବୃତ୍ତ ଭାବେ ଚାହାନ୍ତି, ତେବେ ସେମାନେ ନାଗରିକ ମାନଙ୍କ ମନରେ ଗଣତାନ୍ତ୍ରିକ ଚେତନା ସୃଷ୍ଟି କରିପାରିବେ । ସ୍ୱାଧୀନତା ପରେ ଭାରତୀୟ ସମାଜର ଦ୍ରୁତ ଗତିରେ ପରିବର୍ତ୍ତନ ଘଟୁଛି । ସାମାଜିକ ମୂଲ୍ୟବୋଧ, ନୈତିକ ମୂଲ୍ୟବୋଧ, ସାମାଜିକ ପ୍ରଥା, ପାରିବାରିକ ଜୀବନ ପ୍ରତ୍ୟେକ କ୍ଷେତ୍ରରେ ପରିବର୍ତ୍ତନ ଅନୁଭୂତ ହେଉଛି । ଅନ୍ୟ ଦିଗରେ ଜନସଂଖ୍ୟା ଓ ବେକାର ସଂଖ୍ୟା ବୃଦ୍ଧି ଯୋଗୁଁ ବିଭିନ୍ନ ସମସ୍ୟା ସୃଷ୍ଟି ହେଉଛି । ଦେଶର ଯୁବଶକ୍ତି ମଧ୍ୟରୁ ଅନେକ ଜୀବନୀଶକ୍ତି ରହିତ, ଉତ୍ସାହଶୂନ୍ୟ ଏବଂ ବୈପ୍ଳବିକ ଚିନ୍ତାଧାରାର ଚହୁ ପଛରେ । ଏଣୁ ଶିକ୍ଷକଗୋଷ୍ଠୀ ସେମାନଙ୍କ ଅବସର ସମୟରେ ଯୁବଶକ୍ତିକୁ ସାମାଜିକ କାର୍ଯ୍ୟକ୍ରମରେ ସଂଶ୍ଳିଷ୍ଟ କରି ପାରିଲେ ଦେଶ ତଥା ସମାଜକୁ ଆଗେଇ ନେବାରେ ବିଶେଷ ଭାବେ ସାହାଯ୍ୟ କରିପାରନ୍ତେ । ଅବଶ୍ୟ ସେଥିପାଇଁ ସେମାନଙ୍କୁ ପୁରାତନ ମନୋବୃତ୍ତି, ଶିକ୍ଷାର ଅହମିକା ଛାଡ଼ି ନିଃସ୍ୱାର୍ଥପର ସେବା ଦିଗରେ ଆଗଭର ହେବାକୁ ପଡ଼ିବ । ଅନେକ ଶିକ୍ଷକ ବନ୍ଧୁ ଭାବନ୍ତି ସେମାନଙ୍କର କାମ ଦଶଟାରୁ ଚାରିଟା ଯାଏ । ତା'ପରେ ସେମାନଙ୍କର କାହା ସହ କି ସଂପର୍କ ! ସମାଜର ଭଲ ମନ୍ଦରେ ଭାଗ ନେଇ ଲାଭ କ'ଣ ? ବିଦେଶୀ ଶାସନ କାଳର ଏ ପ୍ରକାର ଅମଲାତାନ୍ତ୍ରିକ ମନୋବୃତ୍ତି ଦୂର ନକଲେ ଏ ଦେଶ, ଏ ଜାତି ଓ ଏ ସମାଜ ପ୍ରତି ଅନୁରକ୍ତି ପ୍ରକାଶ ସମ୍ଭବ ନୁହେଁ ।

## ବର୍ତ୍ତମାନର ସାମାଜିକ ସମସ୍ୟାର ସମାଧାନ ଦିଗରେ ଶିକ୍ଷକମାନଙ୍କ ଭୂମିକା :

ଦେଶର ପ୍ରତ୍ୟେକ ଅଞ୍ଚଳରେ ଶିକ୍ଷାନୁଷ୍ଠାନ ଗଢ଼ି ଉଠିଛି । ପୁଣି ନୂଆ ନୂଆ ଅନୁଷ୍ଠାନର ସଂଗଠନ

ଚାଲିଛି । ଏଣୁ ଶିକ୍ଷକଗଣ ଦେଶର ସାମାଜିକ ପରିସ୍ଥିତି ସମ୍ବନ୍ଧରେ ଯେତିକି ଅବଗତ ହୋଇପାରିବେ, ଅନ୍ୟ କାହାରି ଦ୍ୱାରା ତାହା ସମ୍ଭବ ନୁହେଁ । ଦେଶର ବର୍ତ୍ତମାନର କେତେକ ମୁଖ୍ୟ ସମସ୍ୟା ନିମ୍ନରେ ସୂଚାଇ ଦିଆଯାଇଛି । ପ୍ରତ୍ୟେକ ଶିକ୍ଷକ କେଉଁ ସମସ୍ୟା ସମାଧାନ ପାଇଁ ସରକାରଙ୍କୁ (ଏ ଦେଶର ପୁନର୍ଗଠନରେ) ସହାୟକ ହୋଇ ପାରିବେ ନିଜେ ବିଚାର କରିବେ । କେତେକ ମୁଖ୍ୟ ସମସ୍ୟା ଓ ଶିକ୍ଷକମାନଙ୍କର ସେଗୁଡ଼ିକ ପ୍ରତି ନୈତିକ କର୍ତ୍ତବ୍ୟ :-

କ. ପ୍ରତ୍ୟେକ ବ୍ୟକ୍ତି ବିଶେଷଙ୍କୁ ଦେଶ ପ୍ରତି, ସମାଜ ପ୍ରତି ସେମାନଙ୍କ କର୍ତ୍ତବ୍ୟ ସମ୍ବନ୍ଧରେ ସଚେତନ କରିବା ।

ଖ. ଜନସଂଖ୍ୟା ବୃଦ୍ଧିକୁ ରୋକିବା ପାଇଁ ଯୁବ ଗୋଷ୍ଠୀଙ୍କୁ ପ୍ରେରଣା ଦେବା ଓ ଏହାର ନିୟନ୍ତ୍ରଣ ଦିଗରେ ଦେଶର କାର୍ଯ୍ୟକ୍ରମ ସମ୍ବନ୍ଧରେ ଅବହିତ କରାଇବା ।

ଗ. ବିଦ୍ୟାଳୟକୁ ସାକ୍ଷରତା ବୃଦ୍ଧିର କେନ୍ଦ୍ରସୂଚୀ ରୂପେ ବ୍ୟବହୃତ କରିବା ଓ ନିଜର ବଳକାସମୟ ଏଥିରେ ବିନିଯୋଗ କରିବା ।

ଘ. ବର୍ତ୍ତମାନର ସାମାଜିକ ବ୍ୟାଧି ଯୌତୁକପ୍ରଥା ବିରୁଦ୍ଧରେ ସମାଜ ତଥା ଯୁବଗୋଷ୍ଠୀଙ୍କ ମଧ୍ୟରେ ଚେତନା ସୃଷ୍ଟି କରିବା ।

ଙ. ଜନସାଧାରଣଙ୍କ ସାଧାରଣ ସ୍ୱାସ୍ଥ୍ୟ ଲାଗି ସ୍ୱାସ୍ଥ୍ୟ ବିଭାଗୀୟ କର୍ମଚାରୀଙ୍କୁ ସାହାଯ୍ୟ କରିବା ସଙ୍ଗେ ସଙ୍ଗେ ସମାଜର ରୋଗ ସମ୍ବନ୍ଧୀୟ ଅନ୍ଧବିଶ୍ୱାସ ଦୂର କରିବା । ଶିଶୁମାନଙ୍କୁ ପ୍ରତିଷେଧକ ଟିକା ତଥା ମହିଳାମାନଙ୍କୁ ପୁଷ୍ଟିସାର ଖାଦ୍ୟ ଦେବା ଦିଗରେ ଜନସାଧାରଣଙ୍କୁ ଶିକ୍ଷା ଦେବା ।

ଚ. ରାସ୍ତାଘାଟ, ଜଳାଶୟକୁ ପରିଷ୍କାର ପରିଛନ୍ନ ରଖିବା ଦିଗରେ ଲୋକମାନଙ୍କୁ ଉତ୍ସାହିତ କରିବା ଓ ଏହାର ଆବଶ୍ୟକତା ଦିଗରେ ସେମାନଙ୍କୁ ଜଣେଇବା ।

ଛ. ଯୁବଗୋଷ୍ଠୀଙ୍କୁ କ୍ରୀଡ଼ା ଦିଗରେ ଉତ୍ସାହିତ କରିବା ଓ ବିଭିନ୍ନ ପ୍ରତିଯୋଗିତାରେ ଯୋଗ ଦେବାପାଇଁ ପ୍ରବର୍ତ୍ତାଇବା ।

ଜ. ପ୍ରତ୍ୟହ ଖବରକାଗଜ ପଢ଼ିବା ଦିଗରେ ଯୁବଗୋଷ୍ଠଙ୍କ ମଧ୍ୟରେ ଆଗ୍ରହ ସୃଷ୍ଟି କରିବା ସହ ସେମାନଙ୍କ ମାନସିକ ତଥା ବୌଦ୍ଧିକ ବିକାଶ ପାଇଁ ବିଭିନ୍ନ ପୁସ୍ତକ ଅଧ୍ୟୟନ କରିବା ନିମନ୍ତେ ପ୍ରେରଣା ଦେବା ।

ଝ. ଗ୍ରାମାଞ୍ଚଳର କଳାକାର ମାନଙ୍କୁ ସେମାନଙ୍କ ଅନ୍ତର୍ନିହିତ ଶକ୍ତିର ପରିସ୍ଫୁଟ କରିବା ପାଇଁ ବିଭିନ୍ନ ପ୍ରତିଯୋଗିତାରେ ଯୋଗ ଦେବାପାଇଁ ସାହାଯ୍ୟ କିରବା ।

ଞ. ଆଧୁନିକ କୃଷି ପ୍ରଣାଳୀ ତଥା ଉନ୍ନତ ଚାଷ ପାଇଁ ନିୟମିତ ରେଡ଼ିଓରୁ 'କୃଷି ସଂସାର' ଶୁଣିବା

ନିମନ୍ତେ କୃଷକ ମାନଙ୍କୁ ପ୍ରବର୍ତ୍ତାଇବା ଓ ସାଧାରଣ ଚାଷୀକୁ କୃଷିର ଉନ୍ନତି ଦିଗରେ ସାହାଯ୍ୟ କରିବା ପାଇଁ କୃଷି ବିଭାଗ ସହ ସଂଯୋଗ ସ୍ଥାପନ କରିବା ।

ଟ. ବନ୍ୟ ସଂପଦ ରକ୍ଷା ତଥା ଏହାର ଉପକାରିତା ନେଇ ଜନସାଧାରଣଙ୍କୁ ବୁଝାଇବା ଓ ସାମାଜିକ ବନୀକରଣ କାର୍ଯ୍ୟକ୍ରମରେ ଯୁବସମାଜକୁ ନିୟୋଜିତ କରିବା ।

ଏକ ଆହ୍ୱାନ :

ଏହି ପରିବର୍ତ୍ତିତ ରାଜନୈତିକ ଓ ସାମାଜିକ ପରିପ୍ରେକ୍ଷୀରେ ଦେଶର ଏହି ସମସ୍ୟା ଗୁଡ଼ିକ ଉପଲବ୍ଧି କରି ପ୍ରତ୍ୟେକ ଶିକ୍ଷକ ଅନ୍ତତଃ ଗୋଟିଏ ସମସ୍ୟାର ସମାଧାନ ଦିଗରେ ଜାତୀୟ ସରକାରଙ୍କୁ ସାହାଯ୍ୟ କରିବା ପାଇଁ ଆଗଭର ହେଲେ ଏ ଦେଶ ତଥା ଜାତିର ଅଶେଷ କଲ୍ୟାଣ ସାଧନ କରିବେ । ଭାରତବର୍ଷରେ ରାଜନୈତିକ ବିପ୍ଲବୀମାନେ ରାଜନୈତିକ ସ୍ୱାଧୀନତା ଆଣିଦେଲେ । ଦେଶର ସାମାଜିକ ଓ ସାଂସ୍କୃତିକ ବିପ୍ଲବ ଘଟାଇବାର ସୂତ୍ରଧର ଯେଉଁ ଶିକ୍ଷକମଣ୍ଡଳୀ ସେମାନେ ଆଗଭର ହେଲେ ଭାରତୀୟ ଜନଗଣଙ୍କୁ ସମାଜ ଓ ସଂସ୍କୃତି କ୍ଷେତ୍ରରେ ନୂତନ ନେତୃତ୍ୱ ମିଳିପାରିବ ।

୨

ଶିକ୍ଷା ଓ ସମାଜ ଅଙ୍ଗାଙ୍ଗୀ ଭାବେ ଜଡ଼ିତ । ସମାଜ ସ୍ଥାଣୁ ନୁହେଁ, ଗତିଶୀଳ । ସମାଜର ଗତି ସହ ପାଦ ମିଳେଇ ଶିକ୍ଷାର ପରିବର୍ତ୍ତନ ଆବଶ୍ୟକ ପଡ଼ିଥାଏ । ସମାଜର ଗତିସହ ଶିକ୍ଷା ପରିବର୍ତ୍ତନ ନ ହେଲେ ଶିକ୍ଷାପ୍ରାପ୍ତ ନାଗରିକଗଣ ଯୁଗୋପଯୋଗୀ ହୋଇପାରନ୍ତି ନାହିଁ । ସେମାନଙ୍କ ପାଇଁ ଶିକ୍ଷାହୁଏ ଏକ ଅନାବଶ୍ୟକ ବସ୍ତୁ ଏବଂ ଜୀବନର ମୂଲ୍ୟବାନ ସମୟ ଓ ପରିଶ୍ରମ ବିନିଯୋଗରେ କୌଣସି ଲକ୍ଷ୍ୟସାଧିତ ହୁଏନାହିଁ, ଫଳରେ ଜୀବନରେ ଆସେ ବ୍ୟର୍ଥତା । ଏଣୁ ଶିକ୍ଷାପଦ୍ଧତିକୁ ସମୟର ଆବଶ୍ୟକତା ଅନୁଯାୟୀ ପରିବର୍ତ୍ତନ କରିବା ଅପରିହାର୍ଯ୍ୟ ।

ସମାଜ ପୁରାତନ ସହ ଏତେ ନିବିଡ଼ ଭାବେ ଜଡ଼ିତ ଥାଏ ଯେ ସେ ନୂତନତାକୁ ଗ୍ରହଣ କରିବା ନିମନ୍ତେ ଆଦୌ ଅନୁକୂଳ ମତ ପୋଷଣ କରେନାହିଁ । ନୂତନତା ପ୍ରତି ମନ ସ୍ୱତଃ ବିଦ୍ରୋହୀ ହୋଇଉଠେ । କିନ୍ତୁ ନୂତନତାର ସ୍ୱାଦ ଥରେ ପାଇଗଲେ ଆପେ ଆପେ ଗ୍ରହଣ କରିନିଏ ଓ ସ୍ୱାଗତ ଜଣାଏ । ରାଜନୈତିକ ଓ ସାମାଜିକ ପରିବର୍ତ୍ତନର ପ୍ରତ୍ୟେକ କ୍ଷେତ୍ରରେ ଏଇ ମନୋଭାବ ପରିଲକ୍ଷିତ ହୋଇଛି । ଭାରତର ଇତିହାସରେ ଏଇ ଧରଣର ଦୃଷ୍ଟାନ୍ତ ବିରଳ ନୁହେଁ । ଗୌତମ ବୁଦ୍ଧ ବୌଦ୍ଧଧର୍ମ ପ୍ରଚାର କଲେ । ଶତଶତ ଯୁବକ ଭିକ୍ଷୁ ହେଲେ, ତେଣୁ ଶତଶତ ଜନନୀ ହେଲେ ସନ୍ତାନ ବିଧୁରା । ସେମାନଙ୍କ ପାରିବାରିକ ଜୀବନର ସୁନେଲି ସ୍ୱପ୍ନ ଧୂଳିସାତ୍ ହେଲା । ଗୌତମଙ୍କୁ ଅଭିଶାପ ଦେଲେ । କିନ୍ତୁ ସେଇ ବୁଦ୍ଧଙ୍କ ବାଣୀ ଆଜି ଏଇ ଅଶାନ୍ତି ପୃଥିବୀରେ ଶାନ୍ତିର ପଥ-ପ୍ରଦର୍ଶକ ହୋଇପାରିଛି । ଅତୀତରୁ ବର୍ତ୍ତମାନକୁ ଆସନ୍ତୁ ।

ଏ ଦେଶର ମୁକ୍ତି ପାଇଁ ଗାନ୍ଧିଜୀ ଶାନ୍ତିର ମଶାଲ ଧରିଲେ । ପ୍ରଚାର କଲେ ସତ୍ୟ ଓ ଅହିଂସାର ମୁକ୍ତିବାଣୀ । ପ୍ରବଳ ପ୍ରତାପୀ ବ୍ରିଟିଶ୍ ସରକାର ସେଇ ବାଣୀରେ ନତମସ୍ତକ ହେଲେ । କିନ୍ତୁ ଗାନ୍ଧିଜୀଙ୍କ ପ୍ରଥମ ଆହ୍ୱାନରେ ଏ ଦେଶର ଶତକଡ଼ା କେତେଜଣ ନିଜକୁ ସଂଗ୍ରାମରେ ସାମିଲ କରିଥିଲେ ?

ଦେଢ଼ଶହ ବର୍ଷ ହେଲା ଲର୍ଡମ୍ୟାକଲେଙ୍କ ଶିକ୍ଷା ଯୋଜନା ଅନୁଯାୟୀ ଏ ଦେଶର ପ୍ରାୟ ଏକ ପ୍ରକାର ଶିକ୍ଷା ପ୍ରଚଳନ ହୋଇ ଆସୁଅଛି । ଇତି ମଧ୍ୟରେ ସମୟ ଆଗେଇ ଗଲାଣି ଓ ସମାଜ ବଦଳି ଗଲାଣି । ନୂତନ ଉଦ୍ଭାବନ ଫଳରେ ଜ୍ଞାନରାଜ୍ୟରେ ବିସ୍ଫୋରଣ ଘଟିଲାଣି । କିନ୍ତୁ ସେଇ ଔପନିବେଶ ଶିକ୍ଷାର ଢ଼ାଞ୍ଚାକୁ ଆମେ ଅନୁସରଣ କରି ଚାଲିଛୁ । ବର୍ତ୍ତମାନର ସମାଜ ପକ୍ଷରେ ଏ ଶିକ୍ଷା ଅନୁପଯୁକ୍ତ ହୋଇପଡ଼ିଛି । ଏହାସତ୍ତ୍ୱେ ମଧ୍ୟ ଆମେ ପୁରାତନକୁ ଛାଡ଼ିବାକୁ ରାଜି ନୋହୁଁ । ଆମେ 'ନଇ ନ ଦେଖୁଣୁ ଲଙ୍ଗଳା' - କାଳେ ନୂତନତା ଆମକୁ ବିପଥଗାମୀ କରିବ ଏଇ ଆଶଙ୍କାରେ ।

ଏ ଦେଶ ବର୍ତ୍ତମାନ ବହୁ ସମସ୍ୟା ଦେଇ ଗତି କରୁଛି । ଏକ ଦିଗରେ ଦ୍ରୁତଗତିରେ ଜନସଂଖ୍ୟା ବୃଦ୍ଧି ତ ଅନ୍ୟ ଦିଗରେ ଖାଦ୍ୟର ଅନାଟନ । ଆନୁଷ୍ଠାନିକ, ଅଣ-ଆନୁଷ୍ଠାନିକ ବିଦ୍ୟାଳୟ ମାନ ଖୋଲି ମଧ୍ୟ ଦେଶରେ ଶତକଡ଼ା ୩୪ ସାକ୍ଷର । ଯେତିକି ଶିକ୍ଷିତ ଯୁବକ ବାହାରୁଛନ୍ତି ସେମାନଙ୍କ ପାଇଁ କର୍ମସଂସ୍ଥାନର ବ୍ୟବସ୍ଥା ହୋଇପାରୁନାହିଁ କାରଣ ସେମାନେ ଯେଉଁ ଶିକ୍ଷା ପାଇଲେ ତାହା ସେମାନଙ୍କୁ କୌଣସି ବୃତ୍ତି ଯୋଗାଇବା ପାଇଁ ସହାୟକ ନୁହେଁ । ଅଜ୍ଞତା ଯୋଗୁଁ ଦେଶରେ ଅନ୍ଧବିଶ୍ୱାସ, କୁସଂସ୍କାର ପୂରି ରହିଛି । ବିଜ୍ଞାନର ଗତି ଦ୍ରୁତମାତ୍ରାରେ ହୋଇଥିଲେ ମଧ୍ୟ ଅଜ୍ଞତା ଯୋଗୁଁ ସମାଜ ତାର ଯଥାର୍ଥ ବିନିଯୋଗ ପାଇଁ ଅଯୋଗ୍ୟ । ସ୍ୱାସ୍ଥ୍ୟ ଓ ସମାଜସେବା ପାଇଁ ବିଭିନ୍ନ କାର୍ଯ୍ୟକ୍ରମ ପ୍ରସ୍ତୁତ କଲେ ମଧ୍ୟ ନିର୍ଦ୍ଦିଷ୍ଟ ଲକ୍ଷ୍ୟ ହାସଲ ହୋଇପାରୁ ନାହିଁ । ଏ ସମସ୍ତ ପ୍ରତିବନ୍ଧକ ଥାଇ ଗଣତାନ୍ତ୍ରିକ ସମାଜକୁ ଆଗେଇନେବା ଆଦୌ ସମ୍ଭବ ନୁହେଁ ।

ଏଣୁ ଏକବିଂଶ ଶତାବ୍ଦୀ ପାଇଁ ଏକ ସୁସ୍ଥ ତଥା ପ୍ରଗତିଶୀଳ ସମାଜ ଗଢ଼ିବା ଲକ୍ଷ୍ୟରେ ଶିକ୍ଷାନୀତିର ପରିବର୍ତ୍ତନ ଅପରିହାର୍ଯ୍ୟ ହୋଇପଡ଼ିଛି । ନୂତନ ସମାଜର ଚାହିଦାନୁଯାୟୀ ଶିକ୍ଷାନୀତିକୁ ନୂତନ ଢ଼ାଞ୍ଚାରେ ପ୍ରସ୍ତୁତ କରିବାକୁ ହେବ । ପ୍ରଥମତଃ ନୂତନ ଶିକ୍ଷାନୀତି ଭବିଷ୍ୟତ ନାଗରିକ ମାନଙ୍କ ମଧ୍ୟରେ ସ୍ୱଦେଶପ୍ରୀତି ଜାଗ୍ରତ କରିବାରେ ସମସ୍ତ ଉପାଦାନ ଯୋଗାଇବା ଦରକାର ଯେପରିକି ଏ ଦେଶର ଗଣତନ୍ତ୍ରର ସୁରକ୍ଷା କରିବା ସେମାନଙ୍କ ଜୀବନର ମୂଳମନ୍ତ୍ର ହେବ ।

ଦ୍ୱିତୀୟତଃ ଦେଶରେ ପ୍ରଚଳିତ ବର୍ତ୍ତମାନର ଶିକ୍ଷାନୀତି ଭବିଷ୍ୟତରେ କର୍ମସଂସ୍ଥାନ ପାଇଁ ସର୍ବଦା ଅନିଶ୍ଚିତତା ସୃଷ୍ଟି କରି ଆସୁଛି । ନୂତନ ଶିକ୍ଷାନୀତି ଏକବିଂଶ ଶତାବ୍ଦୀର ନାଗରିକ ମନରୁ ଏହି ଆଶଙ୍କା ଦୂର କରିବା ପାଇଁ ସମର୍ଥ ହେବା ଆବଶ୍ୟକ ।

ତୃତୀୟତଃ ଜାତୀୟ ସ୍ତରରେ ବର୍ତ୍ତମାନର ସାମାଜିକ ତଥା ଅର୍ଥନୈତିକ ସମସ୍ୟା ତଥା ବିଜ୍ଞାନର

ଅଗ୍ରଗତିକୁ ଭିତ୍ତିକରି ପୁସ୍ତକ ପ୍ରଣୟନ ହେବା ଉଚିତ ଯାହାକି ଭାରତର ବିଭିନ୍ନ ପ୍ରାନ୍ତୀୟ ଭାଷାରେ ଅନୁବାଦ କରାଯିବ ।

ଚତୁର୍ଥତଃ ନୂତନ ଶିକ୍ଷାନୀତି ଯେପରି ଏକ ସ୍ୱତନ୍ତ୍ର ଗୋଷ୍ଠୀ ସୃଷ୍ଟି କରିବାରେ ସହାୟକ ନହୁଏ ଓ ଗଣତନ୍ତ୍ରରେ ସମାଜବାଦ ପ୍ରତିଷ୍ଠା କରିବାରେ ଉପଯୁକ୍ତ ପରିବେଶ ସୃଷ୍ଟି କରେ ଏହାକୁ ଆଖି ଆଗରେ ରଖି ଶିକ୍ଷାନୀତିକୁ ପୁନର୍ବିନ୍ୟାସ କରିବା ଦରକାର ।

ପଞ୍ଚମତଃ ଶିକ୍ଷାନୁଷ୍ଠାନ ଗୁଡ଼ିକୁ ଦଳୀୟ ରାଜନୀତିର ଉର୍ଦ୍ଧ୍ୱରେ ରଖି ସେଗୁଡ଼ିକରେ ଏକ ଶୈକ୍ଷିକ ପରିବେଶ ସୃଷ୍ଟିକରି ଶିକ୍ଷାନୁଷ୍ଠାନ ପ୍ରତି ଆକୃଷ୍ଟ କରିବାର ବିଭିନ୍ନ ବ୍ୟବସ୍ଥା ନୂତନ ଶିକ୍ଷାନୀତିରେ ରହୁ । ଏହି ବ୍ୟବସ୍ଥା ଦ୍ୱାରା ବିଦ୍ୟାଳୟର ଆର୍ଥିକ ଅଭାବ ପୂରଣ ପାଇଁ ସବୁବେଳେ ସରକାରଙ୍କ ଉପରେ ନିର୍ଭରଶୀଳ ହେବାକୁ ପଡ଼ିବ ନାହିଁ ।

ସର୍ବୋପରି ଶିକ୍ଷକମାନଙ୍କୁ ନୂତନ ଶିକ୍ଷାନୀତିକୁ ଗ୍ରହଣ ତଥା ପ୍ରୟୋଗ ପାଇଁ ମାନସିକ-ପ୍ରସ୍ତୁତି ବର୍ତ୍ତମାନ ପରିପ୍ରେକ୍ଷୀରେ ଅପରିହାର୍ଯ୍ୟ । ତାଲିମ କେନ୍ଦ୍ରର ଶିକ୍ଷକ (Training College and Schools) ତଥା ଆଗାମୀ ଶତାବ୍ଦୀ ନାଗରିକ ମାନଙ୍କ ଦାୟିତ୍ୱରେ ଥିବା ଶିକ୍ଷକମାନଙ୍କ ପୁନଃପୁନଃ ବୃତ୍ତିଗତ ତାଲିମ (Inservice Training) ସର୍ବାଦୌ ଆବଶ୍ୟକ । ସେମାନେ ଯେଉଁ ତାଲିମ ପାଇ ଶିକ୍ଷାଦାନ-ବୃତ୍ତିକୁ ଅବଲମ୍ବନ କରିଥିଲେ ତାହା ବର୍ତ୍ତମାନର ସମୟ ଓ ସମାଜ ପାଇଁ ସଂପୂର୍ଣ୍ଣ ଅନୁପଯୋଗୀ । ଏହି ତାଲିମ ପ୍ରତି ସରକାର ବିଶେଷ ଗୁରୁତ୍ୱ ଆରୋପ କରିବା ଦରକାର ଓ ଆବଶ୍ୟକ ସମ୍ବଳର ବ୍ୟବସ୍ଥା କରିବା ବିଧେୟ । ଶିକ୍ଷକମାନଙ୍କର ଉପଯୁକ୍ତ ତାଲିମ ଉପରେ ନୂତନ ଶିକ୍ଷାନୀତିର କାର୍ଯ୍ୟକାରିତା ଓ ସଫଳତା ବିଶେଷଭାବେ ନିର୍ଭର କରୁଛି । ପ୍ରତି ଶିକ୍ଷକ ପାଞ୍ଚବର୍ଷରେ ଅନ୍ୟୁନ ଥରେ ଏ ପ୍ରକାର ତାଲିମ ପାଆନ୍ତୁ ଏବଂ ସେମାନଙ୍କ କର୍ମରେ ଦିଗ୍‌ଦର୍ଶନ ଦେବାପାଇଁ ବହୁ ସଂଖ୍ୟକ ବିଶେଷଜ୍ଞ ରହନ୍ତୁ ।

ଦେଶବାସୀଙ୍କ ଆଶା, ସରକାରଙ୍କ ନୂତନ ଶିକ୍ଷାନୀତି ଏ ଦେଶର ସାମାଜିକ ସମସ୍ୟା ଗୁଡ଼ିକ ସମାଧାନରେ ବିଶେଷ ସହାୟକ ହେବ ଓ ଏକବିଂଶ ଶତାବ୍ଦୀର ଉପଯୁକ୍ତ ନାଗରିକ ପ୍ରସ୍ତୁତ କରିବ ଯେଉଁମାନେ ବିଶ୍ୱ ଦରବାରରେ ଭାରତର ସମ୍ମାନ ପ୍ରତିଷ୍ଠା କରିବାରେ ସମର୍ଥ ହୋଇପାରିବେ ।

୩

ଏ ଦେଶର ତ ସମସ୍ୟା ଅନେକ । ସ୍ୱାଧୀନତା ପୂର୍ବ ଓ ପର ସମସ୍ୟାଗୁଡ଼ିକର ଅନୁଧ୍ୟାନ କଲେ ଜଣାଯାଏ ଯେ ଆମେ ଅନେକ କ୍ଷେତ୍ରରେ ଆଗେଇ ଯାଇଛୁ କିନ୍ତୁ ଦେଶ ଆଗେଇବା ସଙ୍ଗେ ସଙ୍ଗେ ସମତାଳ ଦେଇ ସମସ୍ୟା ଗୁଡ଼ିକ ମଧ୍ୟ ଆଗେଇବାରେ ଲାଗିଛି । ଏଇ ସମସ୍ୟା ଗୁଡ଼ିକ

ଆଗେଇନେବାରେ ଜନସଂଖ୍ୟା ବୃଦ୍ଧି ଯେ ବିଶେଷ ସହାୟକ ହେଉଛି ଏହା ବିଭିନ୍ନ ପରିସଂଖ୍ୟାନରୁ ସ୍ପଷ୍ଟ ଅନୁମିତ ହୁଏ । ଏଣୁ ଜନସଂଖ୍ୟାକୁ ରୋକିବା ପ୍ରତ୍ୟେକ ଚେତନଶୀଳ ନାଗରିକର ସର୍ବାଦୌ କର୍ତ୍ତବ୍ୟ ହୋଇପଡ଼ିଛି ନଚେତ୍ 'ବୋଝ ଉପରେ ନଳିତାବିଡ଼ା' ପରି ସମସ୍ୟା ଉପରେ ସମସ୍ୟା ବଢ଼ି ଚାଲିଥିବ ଓ କୌଣସି ସରକାର ଏହାକୁ ନିୟନ୍ତ୍ରଣ ବା ଆୟତ୍ତ କରିପାରିବେ ନାହିଁ ।

ସାମାଜିକ ସମସ୍ୟାଗୁଡ଼ିକର ସମାଧାନ ପାଇଁ ଏକ ଚେତନଶୀଳ ସମାଜ ସୃଷ୍ଟି ପାଇଁ ଶିକ୍ଷା ସବୁବେଳେ ପରିପୂରକ ରୂପେ କାର୍ଯ୍ୟକରେ । ଏଣୁ ଭାରତ ପରି ଏକ ବୃହତ୍ ତଥା ବିକାଶଶୀଳ ଗଣତନ୍ତ୍ର ରାଷ୍ଟ୍ର ପକ୍ଷରେ ଗଣତନ୍ତ୍ରର ସୁରକ୍ଷା ଓ ଜାତୀୟ ସଂହତି ପାଇଁ ଉପଯୁକ୍ତ ଶିକ୍ଷା ବ୍ୟବସ୍ଥା ଅପରିହାର୍ଯ୍ୟ । ବାହ୍ୟ ଦୃଷ୍ଟିରୁ ବିଚାର କଲେ କେହି ନିଶ୍ଚୟ ଆତ୍ମସନ୍ତୋଷ ଲାଭ କରିବ ଯେ ଦେଶରେ ପୂର୍ବାପେକ୍ଷା ଅନେକଗୁଡ଼ିଏ ସ୍କୁଲ ଓ କଲେଜ ଗଢ଼ି ଉଠିଛି ଓ ଶିକ୍ଷା କ୍ଷେତ୍ରରେ ଆମ ଦେଶ ବହୁଗୁଣରେ ଆଗେଇ ଯାଇଛି କିନ୍ତୁ ୧୯୮୧ର ଜନଗଣନା ସ୍ପଷ୍ଟ ସୂଚନା ଦିଏ ଯେ ଏ ଦେଶର ଶହେରୁ ଚଉଷଠି ଜଣ ନିରକ୍ଷର ଯଦିଓ ୧୯୪୭ ତୁଳନାରେ ଶତକଡ଼ା ହାର କୋଡ଼ିଏ ଅଧିକ ହୋଇଛି ଅନ୍ୟପକ୍ଷରେ ଏହି ସମୟ ମଧ୍ୟରେ ଦେଶର ୧୯ କୋଟି ନିରକ୍ଷର ସଂଖ୍ୟା ବୃଦ୍ଧି ପାଇଛି । ଏହି ପରିପ୍ରେକ୍ଷୀରେ ଆମେ ଭାରତ ପରି ଏକ ବୃହତ୍ ଗଣତନ୍ତ୍ର ରାଷ୍ଟ୍ରକୁ ଆଗେଇନେବା କିପରି ?

ଯଦି ଏ ଦେଶରେ ଶତକଡ଼ା ଚାଳିଶ ଲୋକଙ୍କ 'ଅନ୍ନଚିନ୍ତା ଚମତ୍କାର', ତେବେ ନିଜେ ଭୋକରେ ରହି ଭୋକିଲା ପେଟରେ ପୁଅଝିଅଙ୍କୁ ପାଠ ପଢ଼ାଇବା ପାଇଁ ପଠାଇବ କିଏ ? ଧନିକ ଓ ମଧ୍ୟବିତ୍ତ ପରିବାରର ପିତାମାତା ପୁଅଝିଅଙ୍କୁ ପୁଷ୍ଟିକର ଖାଦ୍ୟ ଦେବା କଥା ଚିନ୍ତା କଲାବେଳକୁ ନିତି ରୋଜଗାରିଆ ନିଜ ପୁଅଝିଅଙ୍କୁ ମୁଠିଏ ଖାଇବାକୁ ଦେବା କଥା ଚିନ୍ତା କରିବା ସୁନିଶ୍ଚିତ । ଯଦି ପୁଅ ବା ଝିଅ ଅନ୍ୟର ଗାଈ ବା ଛେଳି ଜଗି ବା ଅନ୍ୟ ଘରେ ପାଇଟି କରି ଦୁଇପଇସା ରୋଜଗାର କରେ ଓ ସେ ନିଜେ ବଞ୍ଚିରହି ପରିବାରକୁ ଯତ୍‌କିଞ୍ଚିତ୍ ଆର୍ଥିକ ସାହାଯ୍ୟ କରେ ତେବେ ତା'ର ପିତାମାତା ପାଠପଢ଼ା ଓ ରୋଜଗାର ଏ ଦୁଇଟିରୁ କାହାର ଉପରେ ବେଶି ପ୍ରାଧାନ୍ୟ ଦେବେ !

ଏହା ଏକ ବିରାଟ ସାମାଜିକ ସମସ୍ୟା । ଏହାର ସମାଧାନ ପାଇଁ ପ୍ରତ୍ୟେକ ଚିନ୍ତାଶୀଳ ତଥା ଶିକ୍ଷିତ ବ୍ୟକ୍ତି ସରକାରଙ୍କୁ ସୁଚିନ୍ତିତ ପରାମର୍ଶ ଦେବା ଉଚିତ । ସାକ୍ଷରତା ବୃଦ୍ଧି ପାଇଁ ସରକାର ବର୍ତ୍ତମାନ ଅଣ-ଆନୁଷ୍ଠାନିକ ଶିକ୍ଷା ଉପରେ ଗୁରୁତ୍ୱ ଦେଉଛନ୍ତି କିନ୍ତୁ ସରକାରୀ ପଦକ୍ଷେପ ଅପେକ୍ଷା ସ୍ୱେଚ୍ଛାସେବୀ ଅନୁଷ୍ଠାନ ଗୁଡ଼ିକର ଉଦ୍ୟମ ଯେ ନିଶ୍ଚୟ ବିଶେଷ ସାଫଲ୍ୟମଣ୍ଡିତ ହେବ ଏଥିରେ ଦ୍ୱିମତ ନାହିଁ । କୌଣସି କାର୍ଯ୍ୟର ସଫଳତା ପାଇଁ କାର୍ଯ୍ୟପ୍ରତି ଆନ୍ତରିକତା ତଥା ସେବା ଓ ତ୍ୟାଗ ମନୋବୃତ୍ତି ଆବଶ୍ୟକ । ଏ ମନୋବୃତ୍ତି ଗୁଡ଼ିକର ଅଭାବରେ କୌଣସି କାର୍ଯ୍ୟକୁ ଆଗେଇ ନେଇ ହେବନାହିଁ ।

ଦେଶର ବର୍ତ୍ତମାନ ପରିସ୍ଥିତିରେ ଗଣତନ୍ତ୍ରକୁ ଆଗେଇ ନେବାପାଇଁ ପ୍ରୌଢ଼ଶିକ୍ଷାର ଆବଶ୍ୟକତା

ଯେତିକି ଗୁରୁତ୍ୱପୂର୍ଣ୍ଣ ଆଗାମୀ କାଲିର ସଚେତନ ତଥା ସୁନାଗରିକ ଗଢ଼ିବା ପାଇଁ ଅଣ-ଆନୁଷ୍ଠାନିକ ଶିକ୍ଷା ତା'ଠାରୁ ବଳି ମହତ୍ତ୍ୱପୂର୍ଣ୍ଣ । ପ୍ରଚଳିତ ଆନୁଷ୍ଠାନିକ ଶିକ୍ଷା ଦେଶର ପ୍ରାୟତଃ ଧନିକ, ମଧ୍ୟବିତ୍ତ ଓ ସଂଭ୍ରାନ୍ତ ବଂଶୀୟ ଗୋଷ୍ଠୀଙ୍କ ପାଇଁ ଉଦ୍ଦିଷ୍ଟ ବୋଲି କୁହାଯାଇପାରେ । ଏକ ଗଣତାନ୍ତ୍ରିକ ଦେଶରେ ସାର୍ବଜନୀନ ଶିକ୍ଷାପାଇଁ ଅଣ-ଆନୁଷ୍ଠାନିକ ଶିକ୍ଷା ବ୍ୟବସ୍ଥା ଅପରିହାର୍ଯ୍ୟ । କିନ୍ତୁ ବର୍ତ୍ତମାନର ଅଣ-ଆନୁଷ୍ଠାନିକ ଶିକ୍ଷା ବ୍ୟବସ୍ଥା ସାକ୍ଷରତା ବୃଦ୍ଧି ଲକ୍ଷ୍ୟ ହାସଲ କରିବାରେ କେତେଦୂର ସାହାଯ୍ୟ କରିବ ତାହା ମଣିଧାନ ତଥା ଆଲୋଚନାର ବିଷୟବସ୍ତୁ ।

ପ୍ରଥମତଃ ଯେଉଁ ଛାତ୍ରଛାତ୍ରୀ ପାରିବାରିକ ଆର୍ଥିକ ଦୁରବସ୍ଥା ଯୋଗୁଁ ବିଦ୍ୟାଳୟ ପରିତ୍ୟାଗ କରୁଛନ୍ତି ସେମାନଙ୍କୁ ଅଣ-ଆନୁଷ୍ଠାନିକ ଶିକ୍ଷା ବ୍ୟବସ୍ଥାର ତାଲିକାଭୁକ୍ତ କରାଯାଉଛି । କିନ୍ତୁ ସେମାନଙ୍କୁ ସୁହାଇଲା ଭଳି ଆମେ ଶିକ୍ଷାର ବ୍ୟବସ୍ଥା କରିପାରିଛୁ କି ? ଅଣ-ଆନୁଷ୍ଠାନିକ ଶିକ୍ଷାକୁ ଆଗେଇ ନେବାପାଇଁ ନିମ୍ନ କେତେକ ବିଷୟ ବିଚାରକୁ ନିଆଯାଇପାରେ ।

କ. ଶିକ୍ଷାଦାନର ସମୟ ସ୍ଥାନୀୟ ସମସ୍ୟାକୁ ଦେଖି ନିରୂପଣ କରାଯିବା ଉଚିତ୍ । ଶିଳ୍ପାଞ୍ଚଳ ଓ କୃଷିପ୍ରାଧାନ୍ୟ ଗ୍ରାମାଞ୍ଚଳର ଅବସ୍ଥା ସମାନ ନୁହେଁ । କେଉଁ ସମୟରେ ପୁଅଝିଅ ବାପା, ମାଙ୍କୁ ଗୃହକାର୍ଯ୍ୟରେ ସାହାଯ୍ୟ କରୁଛନ୍ତି ତାକୁ ଲକ୍ଷ୍ୟରେ ରଖି ଶିକ୍ଷାଦାନର ସମୟ ଧାର୍ଯ୍ୟ କରାଯିବ । ସ୍ଥାନ ବିଶେଷରେ ଅବସ୍ଥା ଭିନ୍ନ ଭିନ୍ନ ହେବ । ବିଭିନ୍ନ ଋତୁରେ ମଧ୍ୟ ଶିକ୍ଷାଦାନର ସମୟ ଭିନ୍ନ ଭିନ୍ନ ହେବା ନିହାତି ଆବଶ୍ୟକ ନଚେତ୍ ପିଲାମାନେ ସ୍କୁଲକୁ ଆସିବେ ନାହିଁ । ଉଦାହରଣ ସ୍ୱରୂପ ବାପା ମା ଚାଷ କାମକୁ ଯିବା ସମୟରେ ପିଲାଟି ଘରର ଛୋଟ ପିଲାଙ୍କୁ ଜଗୁଛି । ସେମାନେ ଦିନ ବାରଟାରେ ଫେରିବେ ଓ ପୁଣି ଚାରିଟା ବେଳକୁ ଚାଷ ଜମିକୁ ଯିବେ । ଏମାନେ ହେଲେ କୃଷି ଶ୍ରମିକ ଗୋଷ୍ଠୀର । ଏଣୁ ଏ କ୍ଷେତ୍ରରେ ଅଣ-ଆନୁଷ୍ଠାନିକ ବିଦ୍ୟାଳୟରେ ପିଲାର ଶିକ୍ଷା ପାଇଁ ଦିନ ବାରଟାରୁ ତିନିଟାଯାଏ ଶିକ୍ଷା ବ୍ୟବସ୍ଥା କରିବା ଆବଶ୍ୟକ । ସ୍ଥାନୀୟ ପରିସ୍ଥିତିକୁ ଦେଖି ଶିଳ୍ପାଞ୍ଚଳରେ ଅନୁଷ୍ଠାନର କାର୍ଯ୍ୟନିର୍ଘଣ୍ଟ ନିଶ୍ଚୟ ସ୍ୱତନ୍ତ୍ର ହେବ ।

ଖ. ପିଲାମାନଙ୍କୁ ଆକୃଷ୍ଟ କରବା ପାଇଁ ଓ ବାପା ମାଙ୍କୁ ପରୋକ୍ଷରେ ସାହାଯ୍ୟ କରିବା ଦୃଷ୍ଟିରୁ ସ୍କୁଲ ପୋଷାକର ବ୍ୟବସ୍ଥା କରିବା ଦରକାର । ଅନେକ ସମୟରେ ଦେଖାଯାଏ ଯେ ପୋଷାକ ଅଭାବରୁ ପିଲାମାନେ ପଢ଼ିଯିବାକୁ ଅନିଚ୍ଛୁକ ଓ ବାପା-ମାଙ୍କ ମଧ୍ୟ ପୋଷାକ ଯୋଗାଇଦେବା ଅସମର୍ଥତା ପ୍ରକାଶ ପାଇଥାଏ ।

ଗ. ପ୍ରାଥମିକ ସ୍ତରର ଅଣ-ଆନୁଷ୍ଠାନିକ ଶିକ୍ଷାନୁଷ୍ଠାନର ଶିକ୍ଷକମାନଙ୍କୁ ମାସିକ ଟ.୧୦୫.୦୦ ଭତ୍ତା ଦେବାର ବ୍ୟବସ୍ଥା ଅଛି । ସମସ୍ତେ ତ ସ୍ୱେଚ୍ଛାସେବୀ ନୁହନ୍ତି । ଏହି ସ୍ୱଳ୍ପ ଭତ୍ତାରେ ଆନ୍ତରିକତା ସହ କାମ କରିବା ପାଇଁ କେତେଜଣ ଆଗେଇ ଆସିବେ ! ଆମେ ଯୋଜନା କରୁଛୁ କିନ୍ତୁ ଯୋଜନାରେ

ଲକ୍ଷ୍ୟ ହାସଲ ପାଇଁ ଆଦୌ ସଚେତନ ନୋହୁଁ । ଏଣୁ ଅଣ-ଆନୁଷ୍ଠାନିକ ଶିକ୍ଷାକୁ ସାଫଲ୍ୟମଣ୍ଡିତ କରିବା ପାଇଁ ଉପଯୁକ୍ତ ଭତ୍ତାର ବ୍ୟବସ୍ଥା କରିବା ଉଚିତ୍ ନଚେତ୍ ଏହାକୁ ସଂପୂର୍ଣ୍ଣ ଭାବେ ସ୍ୱେଚ୍ଛାସେବୀ ଅନୁଷ୍ଠାନମାନଙ୍କ ଦାୟିତ୍ୱରେ ଦେଇଦେବା ଉଚିତ୍ ଓ ସରକାର ଅନୁଦାନ ଆକାରରେ ସେହି ଅନୁଷ୍ଠାନଗୁଡ଼ିକୁ ଆର୍ଥିକ ସାହାଯ୍ୟ ଦେବେ । ଏତଦ୍ୱାରା ସ୍ୱେଚ୍ଛାସେବକଗଣ ଆନ୍ତରିକତା ସହିତ ଏହି ଜାତୀୟ ଗୁରୁଦାୟିତ୍ୱକୁ ସୂଚାରୁ ରୂପେ କାର୍ଯ୍ୟକରୀ କରିପାରିବେ ।

ଅପରପକ୍ଷରେ, ଯଦି ସୁଦୃଢ଼ ଗଣତନ୍ତ୍ର ପ୍ରତିଷ୍ଠା ଉଦ୍ଦେଶ୍ୟରେ ସାକ୍ଷରତା ବୃଦ୍ଧି ପାଇଁ ଅଧିକ ବ୍ୟୟ ବରାଦ କରାଯାଇ ପାରିବ, ତେବେ ଅଣ-ଆନୁଷ୍ଠାନିକ ଶିକ୍ଷା ବୃତ୍ତିଗତ ଭିତ୍ତିରେ ନିମ୍ନ ମାଧ୍ୟମିକ ସ୍ତର ପର୍ଯ୍ୟନ୍ତ ବ୍ୟବସ୍ଥା କଲେ ବହୁ ସଂଖ୍ୟକ ବାଳକ ବାଳିକାଙ୍କୁ ଅଣ-ଆନୁଷ୍ଠାନିକ ଶିକ୍ଷାପ୍ରତି ଆକର୍ଷଣ କରାଯାଇ ପାରିବ । ଯେଉଁ ବାଳକ ବାଳିକା ମାନେ ନିଜର ଭବିଷ୍ୟତକୁ ଜଳାଞ୍ଜଳି ଦେଇ ପିତାମାତାଙ୍କୁ ଯତ୍‌କିଞ୍ଚିତ ସାହାଯ୍ୟ କରୁଛନ୍ତି ସେମାନଙ୍କ ପାଇଁ ଶିକ୍ଷାବ୍ୟବସ୍ଥା ଏପରି କରିବା ଉଚିତ୍ ଯଦ୍ୱାରା କି ସେମାନେ ପାଠପଢ଼ିବା ସଂଗେ ସଂଗେ କିଛି ନା କିଛି ଉପାର୍ଜନ କରି ପିତାମାତାଙ୍କୁ ଆର୍ଥିକ ସାହାଯ୍ୟ କରିପାରିବେ ।

୪

ଆମ ଦେଶ ଭାରତବର୍ଷରେ ପ୍ରାଚୀନ କାଳରୁ ବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧ ପର୍ଯ୍ୟନ୍ତ ଶିକ୍ଷାନୁଷ୍ଠାନଗୁଡ଼ିକ ସମାଜର ପରିଚାଳକ, ଭବିଷ୍ୟତ ବଂଶଧରର ଦିଗ୍‌ଦର୍ଶକ ଏପରିକି ଶାସନର ନିୟନ୍ତ୍ରକ ହୋଇ ଆସିଥିଲା । ଅତୀତରେ ଶାସକବର୍ଗ ବିଦ୍ୟାଗୁରୁଙ୍କ ଠାରୁ ସୁଶାସନ ପାଇଁ ପରାମର୍ଶ ନେଉଥିବାର ବହୁ ଦୃଷ୍ଟାନ୍ତ ଅଛି । କେବଳ ବିଦ୍ୟା ନୁହେଁ, ସଂସ୍କୃତି, ସଦାଚାର ଓ ସଭ୍ୟତାର ଶିକ୍ଷା ଗ୍ରହଣ ପାଇଁ ପିତାମାତା ସେମାନଙ୍କ ସନ୍ତାନମାନଙ୍କୁ ଗୁରୁକୁଳ ଆଶ୍ରମକୁ ପଠାଉଥିଲେ । ସେତେବେଳେ ଗୁରୁକୁଳ ଆଶ୍ରମଗୁଡ଼ିକୁ ସାଧାରଣତଃ ପ୍ରକୃତିର ମନୋରମ ପରିବେଶ ତଥା ପବିତ୍ର ତଟିନୀର ଉପକଣ୍ଠରେ ସ୍ଥାପନ କରାଯାଉଥିଲା । ଏହାର ଶାନ୍ତିପ୍ରଦ ବାତାବରଣ କୋମଳମତି ଶିଶୁମାନଙ୍କ ବିଦ୍ୟାଭ୍ୟାସ ପାଇଁ ଏକାଗ୍ରତା ଆଣିବାରେ ଅନୁକୂଳ ପରିବେଶ ସୃଷ୍ଟି କରୁଥିଲା । ଏହି ମଧୁମୟ ପରିବେଶ ଶିଷ୍ୟମାନଙ୍କ ସୃଜନୀଶକ୍ତି ସୃଷ୍ଟି କରିବାରେ ସହାୟକ ହେଉଥିଲା ।

ବୈଦିକ ଋଷିଙ୍କ ମୁଖରୁ ନିସୃତ ହେଉଥିଲା -

*ଉପହ୍ବରେ ଗିରିଣାଂ ସଙ୍ଗଥେଚ ନଦୀନାଂ ଧିୟୋ ବିପ୍ରୋ ଅଜାୟତ ।*

ପୁନଶ୍ଚ - *ମଧୁବାତା ଋତାୟତେ ମଧୁ କ୍ଷରନ୍ତି ସିନ୍ଧବଃ*

*ମାଧ୍ୱୀର୍ନସନ୍ତୁ ଔଷଧିଃ ମଧୁନକ୍ତମୁତୋଷସୋ ।*

ସେଇ ଗୁରୁକୂଳ ଆଶ୍ରମ ସ୍ଥାନରେ ପାଶ୍ଚାତ୍ୟ ଶିକ୍ଷା ପ୍ରଚଳନ ଯୋଗୁଁ ନୂତନ ଶିକ୍ଷାନୁଷ୍ଠାନ ଗଢ଼ି

ଉଠିଲା । ପାଶ୍ଚାତ୍ୟ ଶିକ୍ଷାର କୁପ୍ରଭାବ ଲକ୍ଷ୍ୟ କରି ସଂକ୍ରମିତ ସମାଜକୁ ଏକ ନୂତନ ମୋଡ଼ ଦେବାପାଇଁ ବିଶ୍ୱଗୁରୁ ରବୀନ୍ଦ୍ରନାଥ ତଥା ଉତ୍କଳବନ୍ଧୁ ଗୋପବନ୍ଧୁ ଯଥାକ୍ରମେ 'ଶାନ୍ତି ନିକେତନ' ଓ 'ସତ୍ୟବାଦୀର ବକୁଳବନ'ରେ ଗୁରୁକୁଳାଶ୍ରମ ଆଦର୍ଶର ଅନୁରୂପ 'ମୁକ୍ତବାୟୁ ବିଦ୍ୟାଳୟ' ଗଢ଼ିଲେ । ବାସ୍ତବରେ ଦେଖାଗଲା ଯେ ସେମାନେ ପ୍ରକୃତ ମଣିଷ ସୃଷ୍ଟି କରିବାରେ ସମର୍ଥ ହୋଇପାରିଲେ । ମାତ୍ର ଏହି ଯୋଗଜନ୍ମା ପୁରୁଷମାନଙ୍କ ପରେ ସେମାନଙ୍କ ପ୍ରଦର୍ଶିତ ଆଦର୍ଶ ଓ ଚିନ୍ତାଧାରା ବେଶିଦିନ ତିଷ୍ଠି ପାରିଲା ନାହିଁ । ବିଜ୍ଞାନର ଅଗ୍ରଗତି ନାମରେ ସମସ୍ତ ଆଦର୍ଶବାଦକୁ ସମୂଳେ ନଷ୍ଟ କରିଦିଆଗଲା ।

ବର୍ତ୍ତମାନ ଶିକ୍ଷାନୁଷ୍ଠାନ ଗୁଡ଼ିକ ଆଉ ସମାଜର ଦିଗ୍‌ଦର୍ଶକ ରୂପେ କାର୍ଯ୍ୟ ନକରି ସମାଜର ପରିପୂରକ ରୂପେ କାର୍ଯ୍ୟ କରୁଛି । ସେହି ଆଦର୍ଶବାଦୀ, ତ୍ୟାଗୀ ଗୁରୁଙ୍କ ବଦଳରେ ଅର୍ଥୋପାର୍ଜନ କରି ଜୀବିକା ନିର୍ବାହ ଉଦ୍ଦେଶ୍ୟରେ ସରକାରଙ୍କ ତରଫରୁ ବିକଳ୍ପ ବ୍ୟବସ୍ଥା ସ୍ୱରୂପ ଶିକ୍ଷକ ବୃତ୍ତିକାମୀ ମାନଙ୍କୁ ନିଯୁକ୍ତି ଦିଆଯାଉଛି । ଏହି 'ସରକାରୀ ଗୁରୁମାନଙ୍କ' ଛାତ୍ରମାନଙ୍କ ସହ ମାତ୍ର ଛଅଘଣ୍ଟା ପାଇଁ ସମ୍ପର୍କ । ଗୁରୁ ଆଉ ଛାତ୍ରମାନଙ୍କୁ ଅନ୍ଧକାରରୁ ଆଲୋକକୁ ନେବା ଚିନ୍ତା କରୁନାହାନ୍ତି । ଶିକ୍ଷା ପରିଷଦ ବା ବିଶ୍ୱବିଦ୍ୟାଳୟର ନିର୍ଦ୍ଦିଷ୍ଟ ପାଠ୍ୟକ୍ରମକୁ ନିର୍ଦ୍ଦିଷ୍ଟ ସମୟରେ କିପରି ଶେଷକରି କାର୍ଯ୍ୟରୁ ଅବ୍ୟାହତି ପାଇବେ ସେ ବିଷୟ ହିଁ ଚିନ୍ତା କରୁଛନ୍ତି । ଶିକ୍ଷକ ଓ ଛାତ୍ରର ସମ୍ବନ୍ଧ ଦିନକୁ ଦିନ ବିଷମ ହୋଇ ଉଠୁଛି । ସମ୍ପର୍କ ସ୍ଥାପନ କରିବା ଶିକ୍ଷକଙ୍କ ଇଚ୍ଛା ନୁହେଁ । କେବଳ ଅର୍ଥ ଚିନ୍ତା ତାଙ୍କର ବିଧେୟ ।

ପୁନଶ୍ଚ, ସମାଜର କୁପ୍ରଭାବ ଶିକ୍ଷାନୁଷ୍ଠାନକୁ ପ୍ରଭାବିତ କରୁଛି । ବହୁକାଳରୁ ବିଘ୍ନ ବିନାଶନ ଗଣନାୟକ ଓ ବିଦ୍ୟାଦାତ୍ରୀ ସରସ୍ୱତୀଙ୍କ ପୂଜାର୍ଚ୍ଚନା ଶିକ୍ଷାନୁଷ୍ଠାନ ଗୁଡ଼ିକରେ ପ୍ରଚଳିତ ଅଛି । ବିଦ୍ୟାଳୟର ଏହି ଉତ୍ସବରେ ଡ଼ାକବାଜି ଯନ୍ତ୍ର ସାହାଯ୍ୟରେ ଯେଉଁ ଧରଣ ସିନେମା ସଙ୍ଗୀତ ପରିବେଶିତ ହୁଏ ତାହା ଅଳ୍ପେ ବହୁତ ସମସ୍ତେ ଜାଣନ୍ତି । ସିନେମା ସଙ୍ଗୀତ ବାଟଘାଟରେ ଗାଇ ବୁଲିବା ଆଧୁନିକ ଯୁବକ ଓ ଛାତ୍ରଙ୍କ ଏକପ୍ରକାର ଆଦତ୍ ହୋଇଗଲାଣି । ସେଥିରେ ସେମାନେ ଆତ୍ମସନ୍ତୋଷ ଓ ତଥାକଥିତ ଆତ୍ମସମ୍ମାନ ଲାଭ କରିବା ସଙ୍ଗେ ସଙ୍ଗେ ବିପୁଳ ଆନନ୍ଦ ପାଆନ୍ତି । ଗୋଟିଏ ଦୃଷ୍ଟାନ୍ତ ଦେଲେ ବୋଧହୁଏ ଏହା ଅତିଶେୟୋକ୍ତି ହେବନାହିଁ । ଦିନକର ଘଟଣା - ଜଣେ ଭଦ୍ରବ୍ୟକ୍ତି ତାଙ୍କ ସ୍ତ୍ରୀଙ୍କ ସହ ସିନେମା ପ୍ରେକ୍ଷାଳୟକୁ ଯାଉଥିଲେ । ସେମାନଙ୍କୁ ଲକ୍ଷ୍ୟକରି ଜଣେ ତରୁଣ ଯୁବକ ଏକ ଚଳଚ୍ଚିତ୍ର ସଙ୍ଗୀତ ଗାଇ ଉଠିଲେ । ମହିଳାଙ୍କ ମୁହଁ ଲଜ୍ଜାରେ ରକ୍ତିମ ହୋଇଗଲା । ଭଦ୍ରଲୋକ ଜଣକ ଗୋଟିଏ ବିଦ୍ୟାଳୟର ଶିକ୍ଷକ । ପଛକୁ ଓଲଟି ସଙ୍ଗୀତଜ୍ଞଙ୍କୁ ଦେଖନ୍ତି ତ ସେ ଜଣେ ତାଙ୍କରି ପ୍ରିୟ ଛାତ୍ର । ସିନେମାର ସଙ୍ଗୀତ, ଅଭିନେତା ଓ ଅଭିନେତ୍ରୀଙ୍କ ବେଶଭୂଷା ବିଦ୍ୟାଳୟର ଛାତ୍ରଛାତ୍ରୀଙ୍କ ଉପରେ କି ପ୍ରଭାବ ପକାଉଛି ଓ ବିଦ୍ୟାଳୟର ଶୈକ୍ଷିକ ପରିବେଶକୁ କ୍ଷୁର୍ଣ୍ଣକରି କିପରି ଦୂଷିତ କରୁଛି ଏହା ଏକ ଦୃଷ୍ଟାନ୍ତ ମାତ୍ର ।

ଅଶ୍ଳୀଳ ସାହିତ୍ୟ ସୃଷ୍ଟିକରି କେତେକ ଲେଖକ ଓ ମୁଦ୍ରାକର ବ୍ୟବସାୟିକ ଭିତ୍ତିରେ ବେଶ୍

ଅର୍ଥୋପାର୍ଜନ କରି ପାରୁଛନ୍ତି । ଏହି ପୁସ୍ତକଗୁଡ଼ିରେ ଦିଆ ଯାଉଥିବା ନାରୀର ନଗ୍ନଚିତ୍ର କୈଶୋର ଓ ଯୌବନାବସ୍ଥାର ଛାତ୍ରଛାତ୍ରୀଙ୍କୁ ଆକର୍ଷଣ କରୁଛି ଓ ବିପଥଗାମୀ ହେବାରେ ବିଶେଷ ଭାବରେ ସହାୟକ ହେଉଛି । ଏହି ଅଶ୍ଳୀଳ ସାହିତ୍ୟ ମଧ ବିଦ୍ୟାଳୟର ଶୈକ୍ଷିକ ପରିବେଶକୁ ନଷ୍ଟ କରିବାର ଅନ୍ୟତମ କାରଣ ।

ଶିକ୍ଷକ ସବୁବେଳେ 'ହାତେ ମାପି ଚାଖଣ୍ଡେ ଚାଲିବା' ଦରକାର । ଅର୍ଥାତ୍ ସେ ଯାହା କରୁଛନ୍ତି ତାହା ଖୁବ୍ ଗଭୀର ଭାବେ ଚିନ୍ତାକରି ନକଲେ ତା'ର ପ୍ରଭାବ ଛାତ୍ରଛାତ୍ରୀଙ୍କ ଉପରେ ପଡ଼ିବା ସୁନିଶ୍ଚିତ । ଶିକ୍ଷକ ଯାହା କରନ୍ତି ଛାତ୍ରମାନେ ତାକୁ ଅବିଳମ୍ବେ ଗ୍ରହଣ କରିନିଅନ୍ତି, ଯାହା ଭୁଲ୍ ହେଲେ ବି ପିତାମାତାଙ୍କ ପକ୍ଷରେ ସଂଶୋଧନ କରିବା ସମ୍ଭବ ନୁହେଁ, କାରଣ ଛାତ୍ର ଅନ୍ୟମାନଙ୍କ ବାରଣ ମାନିବାକୁ ରାଜି ନୁହେଁ । ଏଣୁ ଶିକ୍ଷକ ସଦାଚାରୀ ଓ ସଂଯମୀ ହେବା ଆବଶ୍ୟକ । ଶିକ୍ଷକ 'Do what I say and do not do what I do' କହିବା ନିରର୍ଥକ ।

ବିଦ୍ୟାଳୟ ପରିବେଶ ଦୂଷିତ ହେବା ଓ ପିଲାମାନଙ୍କ ମଧରେ ବିଶୃଙ୍ଖଳା ଦେଖାଯିବା ଅନ୍ୟ ଏକ କାରଣ ହେଲା ଶିକ୍ଷକ ସାମାଜିକ ପରିବର୍ତ୍ତନ ଓ ବିଜ୍ଞାନର ଅଗ୍ରଗତି ସହ ପାଦ ମିଳାଇ ଚାଲି ନପାରିବା ଫଳରେ ପିଲାମାନେ ଆଗେଇ ଯାଉଛନ୍ତି ଓ ଶିକ୍ଷକମାନେ ପଛରେ ପଡ଼ି ଯାଉଛନ୍ତି । ପ୍ରତ୍ୟହ ଜ୍ଞାନରାଜ୍ୟରେ ଯେଉଁ ବିସ୍ଫୋରଣ ହେଉଛି ଶିକ୍ଷକ ତା'ସହ ସୁପରିଚିତ ହେବା ନିତାନ୍ତ ଦରକାର ନଚେତ୍ ଶିକ୍ଷାଦାନରେ ପିଲାମାନଙ୍କ ଆବଶ୍ୟକତା ସେ ପୂରଣ କରିବାରେ ଆଦୌ ସମର୍ଥ ହେବେନାହିଁ । ଫଳରେ ସେ ଛାତ୍ରଛାତ୍ରୀମାନଙ୍କ ଠାରୁ ସମ୍ମାନ ପରିବର୍ତ୍ତେ ଭର୍ତ୍ସନା ପାଇବା ସୁନିଶ୍ଚିତ । ବର୍ତ୍ତମାନ ପୁସ୍ତକ, ପତ୍ରପତ୍ରିକା, ରେଡ଼ିଓ ଓ ଟେଲିଭିଜନ ଜ୍ଞାନ ବିତରଣର ମାଧମ ହୋଇଯାଇଛି । ଦୈନନ୍ଦିନ ଜ୍ଞାନ ବିତରଣର ମାଧମ ସହ ସମ୍ପର୍କ ରକ୍ଷା କରିବା ସଙ୍ଗେ ସଙ୍ଗେ ବିଭିନ୍ନ ସୂତ୍ରରୁ ଅଧିକ ଜ୍ଞାନ ଆହରଣ ପାଇଁ ଶିକ୍ଷକଗଣ ସବୁବେଳେ ଚେଷ୍ଟିତ ହେବା ନିତାନ୍ତ ପ୍ରୟୋଜନ । ପୁନଶ୍ଚ, ପରିବର୍ତ୍ତିତ ପରିସ୍ଥିତି ସହ ପାଦ ମିଳେଇ ଚାଲିବା ପାଇଁ ଶିକ୍ଷକମାନଙ୍କୁ ବିଷୟ ବିଶାରଦମାନଙ୍କ ଦ୍ୱାରା ବାରମ୍ବାର ବୃତ୍ତିଗତ ତାଲିମ ପାଇଁ ସରକାରଙ୍କ ତରଫରୁ ବ୍ୟବସ୍ଥା ହେବା ସର୍ବାଦୌ ବାଞ୍ଛନୀୟ ।

ସମାଜର ନୈତିକ ଅଧୋଗତିର କୁପ୍ରଭାବ ଶିକ୍ଷାନୁଷ୍ଠାନକୁ ବିଶେଷ ଭାବେ ଆକ୍ରାନ୍ତ କରୁଛି । ଅନେକ ସମୟରେ ଦେଖାଯାଏ ଯେ ପିତାମାତା କେଉଁଟା ଭଲ, କେଉଁଟା ନିଜ ପୁତ୍ରକନ୍ୟାଙ୍କୁ କୁପଥଗାମୀ କରେ ଆଦୌ ବିଚାର କରି ପାରୁନାହାନ୍ତି । ଦିନଥିଲା, ଯେତେବେଳେ ବିଶ୍ୱବିଦ୍ୟାଳୟ ବା ଶିକ୍ଷା ପରିଷଦର ପରୀକ୍ଷା ପରିଚାଳନା କରିବା ଏକ ନୈତିକ କର୍ତ୍ତବ୍ୟ ବୋଲି ଶିକ୍ଷକଗଣ ଭାବୁଥିଲେ । ତାହା ଆଉ ନାହିଁ । ପରୀକ୍ଷା ସମୟ ଆସିଲେ କାଳ ଆସିଲା । ବିନା ମାଜିଷ୍ଟ୍ରେଟ ଓ ବିନା ପୁଲିସରେ ଆଉ ପରୀକ୍ଷା ପରିଚାଳନା କରିବା ଆଦୌ ସମ୍ଭବ ନୁହେଁ । ଏପରିକି ଦେଖାଯାଉଛି ପରିବାରର ମାନ୍ୟଗଣ୍ୟ ବ୍ୟକ୍ତି

ନିଜ ପୁତ୍ରକନ୍ୟାଙ୍କୁ କପି ଯୋଗାଇବା ପାଇଁ କୁଣ୍ଠା ବା ଲଜ୍ଜା ବୋଧ ନକରି ପରୀକ୍ଷା ହଲ୍‌କୁ ଯାଉଛନ୍ତି । ତେଣୁ ସେମାନେ ନିଜ ଭବିଷ୍ୟତ ବଂଶଧରର ନୈତିକ ଅଧୋଗତି ପାଇଁ ଦାୟୀ ନୁହନ୍ତି କି ? ଏପରି କ୍ଷେତ୍ରରେ ପରୀକ୍ଷା କରିବା କ'ଣ ଦରକାର, ଏହା ଏକ ଜଟିଳ ପ୍ରଶ୍ନ ଯାହାର ସମାଧାନର ଉପାୟ ସରକାର ବା ଶିକ୍ଷାବିତ୍ ସ୍ଥିର କରିପାରୁ ନାହାନ୍ତି ।

ଆହୁରି ଏକ ଆଲୋଚନାର ବିଷୟ ଯେ ସଂକୀର୍ଣ୍ଣ ତଥା ବ୍ୟକ୍ତିଗତ ସ୍ୱାର୍ଥ ଜଡ଼ିତ ରାଜନୀତି ଛାତ୍ରଛାତ୍ରୀମାନଙ୍କୁ ଦେଶର ଭବିଷ୍ୟତ ସୁନାଗରିକ କରିବା ପରିବର୍ତ୍ତେ ସେମାନଙ୍କୁ ଶିକ୍ଷା କ୍ଷେତ୍ରରୁ ଦୂରେଇ ନେଉଛି ଓ ସେମାନଙ୍କ ଭବିଷ୍ୟତ ଅନ୍ଧକାର କରିବାରେ ବିଶେଷ ସହାୟକ ହେଉଛି । ଫଳରେ ସେମାନଙ୍କ ଭବିଷ୍ୟତ ଏକ ଅନିଶ୍ଚିତ ଅବସ୍ଥାରେ ପହଞ୍ଚୁଛି ଯାହାର ପ୍ରତିକ୍ରିୟା ସ୍ୱରୂପ ସେମାନେ ଶିକ୍ଷାପ୍ରତି ବୀତସ୍ପୃହ ମନୋଭାବ ତଥା ଶିକ୍ଷକମାନଙ୍କ ପ୍ରତି ବେଖାତିର ମନୋଭାବ ପୋଷଣ କରୁଛନ୍ତି । ଏହାଦ୍ୱାରା ବିଦ୍ୟାଳୟ ଗୁଡ଼ିକରେ ଶୈକ୍ଷିକ ପରିବେଶ ନଷ୍ଟ ହେଉଛି ।

ବର୍ତ୍ତମାନ ଦେଶରେ ଶିକ୍ଷିତ ଯୁବକ ଯୁବତୀମାନଙ୍କ ପାଇଁ ଭବିଷ୍ୟତ କର୍ମସଂସ୍ଥାନର ଅନିଶ୍ଚିତତା ସୃଷ୍ଟି ହୋଇଛି । ସେଥିପାଇଁ ସେମାନେ ଆଜିର ଶିକ୍ଷା ପାଇଁ ବୀତସ୍ପୃହ । ଏଣୁ ପ୍ରାଥମିକ ସ୍ତରରୁ କର୍ମାଭିମୁଖୀ ଶିକ୍ଷାର ପ୍ରଚଳନ ଅପରିହାର୍ଯ୍ୟ । ଏହା ଫଳରେ ପିଲା ପାଠପଢ଼ା ପରେ ଚାକିରି ନକରି ମଧ୍ୟ ନିଜର ଭରଣ ପୋଷଣ ପାଇଁ ବ୍ୟବସ୍ଥା କରିପାରିବେ । କର୍ମାଭିମୁଖୀ ଶିକ୍ଷା ପିଲାମାନଙ୍କୁ ବିଦ୍ୟାଳୟକୁ ଆକର୍ଷଣ କରିବା ସଙ୍ଗେ ସଙ୍ଗେ ବିଦ୍ୟାଳୟ ପରିବେଶକୁ ମନୋହର କରିପାରିବ ।

ଆଜିର ଶିକ୍ଷା ପଦ୍ଧତି ଉପଯୁକ୍ତ ମଣିଷ ତିଆରି କରିବାରେ, ପାରିପାର୍ଶ୍ୱିକ ସମାଜ ସହ ସଂପର୍କ ସ୍ଥାପନ କରିବାରେ, ଦେଶ ପ୍ରତି ଅନୁରକ୍ତି ସୃଷ୍ଟି କରିବାରେ ବିଶେଷ ସାହାଯ୍ୟ କରୁନାହିଁ । ଫଳରେ ସାଂପ୍ରଦାୟିକତା, ଆଞ୍ଚଳିକତା ତଥା ଜାତିଗତ ମନୋଭାବ ସୃଷ୍ଟି ହେଉଛି । ଏଣୁ ଏହି ଭେଦାଭେଦ ଗୁଡ଼ିକର ମୂଳୋତ୍ପାଟନ ପାଇଁ ମାନସିକ ପରିବେଶ ବିଦ୍ୟାଳୟ ସ୍ତରରୁ ସୃଷ୍ଟି କରିବା ଶିକ୍ଷକମାନଙ୍କ ସର୍ବାଦୌ କର୍ତ୍ତବ୍ୟ । ବେଦ, କୋରାନ୍ ଓ ବାଇବେଲ୍ ପ୍ରଭୃତି ଧର୍ମଗ୍ରନ୍ଥର ମୂଳଲକ୍ଷ୍ୟ ଉତ୍ତମ ମଣିଷ ତିଆରି କରିବା । ଏଣୁ ଧର୍ମ ସମ୍ବନ୍ଧୀୟ ସଂକୀର୍ଣ୍ଣତା ଦୂରୀକରଣ ପାଇଁ ପ୍ରତ୍ୟହ ପ୍ରାର୍ଥନା ସଭାରେ କୌଣସି ଏକ ଧର୍ମଗ୍ରନ୍ଥରୁ କିଛି ନା କିଛି ଆବୃତ୍ତି ଓ ଆଲୋଚନା ହେବା ଦରକାର । ଏତଦ୍‌ବ୍ୟତୀତ, ଭାରତର ସ୍ୱାଧୀନତା ସଂଗ୍ରାମର ଶହୀଦ୍‌ମାନଙ୍କ ଜୀବନୀ ଆଲୋଚନା କଲେ ପିଲାଙ୍କ ମନରେ ଦେଶପ୍ରେମ ଉଦ୍ରେକ ହୋଇପାରିବ ।

ବିଦ୍ୟାଳୟର ପରିବେଶକୁ ଦୂଷିତ କରୁଥିବା କାରଣ ଗୁଡ଼ିକ ପ୍ରତି ପାରିପାର୍ଶ୍ୱିକ ସମାଜ, ଅଭିଭାବକ ଓ ଶିକ୍ଷକଗଣ ଧ୍ୟାନ ଦେଲେ ବିଦ୍ୟାଳୟରେ ଶୈକ୍ଷିକ ପରିବେଶ ସୃଷ୍ଟି କରିବା ସଙ୍ଗେ ସଙ୍ଗେ ଏ ଦେଶର ଭବିଷ୍ୟତ ବଂଶଧରଙ୍କୁ ଉପଯୁକ୍ତ ଭାବେ ଗଢ଼ା ଯାଇପାରିବ ।

## ୫

## ସାକ୍ଷରତା ଅଭିବୃଦ୍ଧି ପାଇଁ ପ୍ରାକ୍-ସ୍ୱାଧୀନତା କାଳର କାର୍ଯ୍ୟକ୍ରମ ଓ ଦେଶର ବର୍ତ୍ତମାନ ପରିସ୍ଥିତି :

ଭାରତ ଭଳି ଏକ ବୃହତ୍ ଗଣତନ୍ତ୍ର ରାଷ୍ଟ୍ରରେ ଗଣତାନ୍ତ୍ରିକ ସୁରକ୍ଷା ଓ ଅର୍ଥନୈତିକ ପ୍ରଗତି ପାଇଁ ସାର୍ବଜନୀନ ଶିକ୍ଷା ଯେ ଅପରିହାର୍ଯ୍ୟ ଏହା ସର୍ବବାଦୀ ସମ୍ମତ । ଦେଶର ସାକ୍ଷରତା ବୃଦ୍ଧି ଓ ନିରକ୍ଷରତା ଦୂରୀକରଣ ଏକ ଜାତୀୟ କାର୍ଯ୍ୟକ୍ରମ ଓ ଜାତୀୟ ସରକାରଙ୍କ ଏହା ଏକ ବାଧ୍ୟତାମୂଳକ କର୍ତ୍ତବ୍ୟ ଓ ଦାୟିତ୍ୱ । ଏହି କାର୍ଯ୍ୟକ୍ରମର ସାଫଲ୍ୟ ଉପରେ ଦେଶରେ ଗଣତନ୍ତ୍ରର ସ୍ଥିତି ଓ ପ୍ରଗତି ସଂପୂର୍ଣ୍ଣ ରୂପେ ନିର୍ଭର କରେ । ଭାରତ ପରି ଏକ ଗ୍ରାମ ବହୁଳ ଦେଶରେ ଗ୍ରାମ୍ୟ ଜୀବନର ବିକାଶ ଓ ନିରକ୍ଷରତା ଦୂରୀକରଣ ଯୋଜନା ପରସ୍ପର ଓତପ୍ରୋତ ଭାବେ ଜଡ଼ିତ । ଦେଶର ଲୋକସଂଖ୍ୟାର ପ୍ରାୟ ଅର୍ଦ୍ଧେକ ଲୋକ ୨୫ ବର୍ଷରୁ କମ୍ ବୟସର ଓ ଏକ ଚତୁର୍ଥାଂଶ ୧୨ ରୁ ୩୦ ବର୍ଷ ବୟସସୀମା ମଧ୍ୟରେ । ପୁନଶ୍ଚ ୧୫ ରୁ ୩୫ ବର୍ଷ ବୟସସୀମା ମଧ୍ୟରେ ଦେଶର ମୋଟ ଜନସଂଖ୍ୟାର ଶତକଡ଼ା ୩୩ ଜଣ ଓ ଏମାନଙ୍କ ମଧ୍ୟରୁ ଶତକଡ଼ା ୭୩ ଜଣ ଗ୍ରାମାଞ୍ଚଳରେ ବାସ କରନ୍ତି । ୧୯୮୧ ଜନଗଣନା ଅନୁଯାୟୀ ଏହି ବୟସସୀମାର ୧୧ କୋଟି ନିରକ୍ଷର ଓ ଏଥିମଧ୍ୟରୁ ଶତକଡ଼ା ୭୫.୧୮ ସ୍ତ୍ରୀ ଲୋକ । ଭାରତର ସହରାଞ୍ଚଳର ସାକ୍ଷର ସଂଖ୍ୟା ଶତକଡ଼ା ୫୭.୪ ହେବାସ୍ଥଳେ ଗ୍ରାମାଞ୍ଚଳରେ ଶତକଡ଼ା ୨୯.୬୫ । ଏଣୁ ଆମର ସାକ୍ଷରତା କାର୍ଯ୍ୟକ୍ରମକୁ ଗ୍ରାମାଞ୍ଚଳରେ କେନ୍ଦ୍ରୀଭୂତ କରି ତାହାର ସଫଳ ରୂପାୟନ ଉପରେ ଦେଶର ସାକ୍ଷରତା ବୃଦ୍ଧି ନିର୍ଭର କରେ । ଆନୁଷ୍ଠାନିକ ଶିକ୍ଷା ସଙ୍ଗେ ସଙ୍ଗେ ଅଣ ଆନୁଷ୍ଠାନିକ ଶିକ୍ଷାର ଦୁଇଟି କାର୍ଯ୍ୟକ୍ରମ ୬ ବର୍ଷରୁ ୧୪ ବର୍ଷ ଓ ୧୫ ବର୍ଷରୁ ୩୫ ବର୍ଷ ବୟସ୍କ ପାଇଁ ସାକ୍ଷରତା ବୃଦ୍ଧି ଉଦ୍ଦେଶ୍ୟରେ ନିଆ ଯାଇଛି । ପୂର୍ବରୁ ୬ ରୁ ୧୪ ବର୍ଷ ପିଲାଙ୍କ ଅଣ-ଆନୁଷ୍ଠାନିକ ଶିକ୍ଷା କାର୍ଯ୍ୟକ୍ରମ ଉପରେ ଆଲୋଚନା କରାଯାଇଛି । ଏଠାରେ ୧୫ ରୁ ୩୫ ବର୍ଷ ନିରକ୍ଷରଙ୍କ ସାକ୍ଷରତା ଉପରେ ଆଲୋକପାତ କରାଯାଉଛି ।

ଏହି ବୟସ କଥା ଚିନ୍ତା କଲାବେଳେ ମନ ମଧ୍ୟରେ ସ୍ୱତଃ ପ୍ରଶ୍ନ ଜାଗ୍ରତ ହୁଏ ମଣିଷର ଯୌବନାବସ୍ଥାର କଥା, ଜୀବନର ଶ୍ରେଷ୍ଠ ଭାଗ, ଯେତେବେଳେ ଶରୀର ଅଶେଷ ଶକ୍ତିରେ ଭରା ଓ ମନରେ ଅନେକ ଆଶା ଓ ସ୍ୱପ୍ନ । ଯେଉଁ ଜାତି ଏ ଶକ୍ତିର ଉପଯୁକ୍ତ ବିନିଯୋଗ ନକରି ଅପଚୟ କଲା ସେ ଜାତିର ଦୁର୍ଗତି ଯେ ସୁନିଶ୍ଚିତଦ ଏହା କେହି ଅସ୍ୱୀକାର କରିବେ ନାହିଁ । ଏ ଦେଶର ଏହି ବୟସର ୧୧ କୋଟି ଲୋକ ନିରକ୍ଷର । ଦେଶର ପ୍ରଗତି ଓ ବିଜ୍ଞାନର ଅଗ୍ରଗତି ସହ ସେମାନଙ୍କର କୌଣସି ସଂପର୍କ ନାହିଁ । ଜାତୀୟ ଜୀବନ ସ୍ରୋତରୁ ସେମାନେ ବିଚ୍ଛିନ୍ନ । ତେବେ ଏ ଦେଶରେ ସୁଦୃଢ଼ ଗଣତନ୍ତ୍ର ପ୍ରତିଷ୍ଠା କରିବା ଓ ଜାତୀୟ ଯୋଜନା ଗୁଡ଼ିକର ସଫଳ ରୂପାୟନ କରିବାର ଦିବାସ୍ୱପ୍ନ ଦେଖିବା କିପରି ?

ଏମାନଙ୍କୁ ସାକ୍ଷର କରି ବିଭିନ୍ନ ଯୋଜନାର ଅନ୍ତର୍ଭୁକ୍ତ ନକଲେ, ଯୋଜନା ଗୁଡ଼ିକ ଯୋଜନାରେ ହିଁ ରହିବ ଓ ଯୋଜନାରେ ବିପୁଳ ଅର୍ଥ ବିନିଯୋଗ କରି ଆମେ ଲକ୍ଷ୍ୟ ସ୍ଥଳରେ ଆଦୌ ପହଞ୍ଚି ପାରିବା ନାହିଁ ।

ଆମ ଦେଶରେ ସ୍ୱାଧୀନତାର ବହୁବର୍ଷ ପୂର୍ବରୁ ଦେଶରେ ସାକ୍ଷରତା ବୃଦ୍ଧି ପାଇଁ ସରକାରଙ୍କ ତରଫରୁ କୌଣସି ଯୋଜନା ବା କାର୍ଯ୍ୟକ୍ରମ ନିଆଯାଇ ନଥିଲେ ମଧ୍ୟ ଅନେକ ବେସରକାରୀ ଅନୁଷ୍ଠାନ ଯଥା :- ଜୁମା ଦାଦା - ବରୋଦା, ଶିବାଜୀ- ଅମରାବତୀ ଆଦି ଯୁବଗୋଷ୍ଠୀର ଶିକ୍ଷା ଉପରେ କାର୍ଯ୍ୟକ୍ରମ ଆରମ୍ଭ କରିଥିଲେ । ୧୯୦୮ ରେ Bhaden Powell Movement ଆଦି ସଂଗଠନ ଗୁଡ଼ିକର ମଧ୍ୟ ଯୁବଶକ୍ତିର ଉପଯୁକ୍ତ ବିନିଯୋଗ ପାଇଁ ବିଭିନ୍ନ କାର୍ଯ୍ୟକ୍ରମର ଯୋଜନା ଥିଲା । ପ୍ରାକ୍ ସ୍ୱାଧୀନତା ଓ ସ୍ୱାଧୀନତା ପରବର୍ତ୍ତୀ କାଳରେ ସାକ୍ଷରତା ବୃଦ୍ଧି ପାଇଁ ବେସରକାରୀ ତଥା ସରକାରୀ ଅନୁଷ୍ଠାନ ତରଫରୁ ଅନେକ ଯୋଜନା ହୋଇଛି । ଯୋଜନା କମିଶନଙ୍କ ୧୯୭୮ ମସିହାରେ ସୁପାରିଶ ଉପରେ ଓଡ଼ିଶାରେ ବର୍ତ୍ତମାନ କାର୍ଯ୍ୟକାରୀ ହେଉଥିବା ଗ୍ରାମ୍ୟ ବୃତ୍ତିଭିତ୍ତିକ ସାକ୍ଷରତା ଯୋଜନାର ଲକ୍ଷ୍ୟ କାର୍ଯ୍ୟକାରିତା ଓ ଫଳାଫଳ ଆମର ଅନୁଧ୍ୟାନର ବିଷୟ ।

ବର୍ତ୍ତମାନ କାର୍ଯ୍ୟକାରୀ ହେଉଥିବା ଗ୍ରାମ୍ୟ-ବୃତ୍ତି-ଭିତ୍ତିକ ସାକ୍ଷରତା ଯୋଜନାର ଲକ୍ଷ୍ୟ :

ଏହି ଗ୍ରାମ୍ୟ-ଭିତ୍ତିକ ସାକ୍ଷରତା କାର୍ଯ୍ୟକ୍ରମ ମୁଖ୍ୟତଃ ତିନୋଟି ଲକ୍ଷ୍ୟ ଉପରେ ଆଧାରିତ ଓ ଏହାର କାର୍ଯ୍ୟକାରିତା ଗ୍ରାମାଞ୍ଚଳ ସାକ୍ଷରତା ବୃଦ୍ଧି ମଧ୍ୟରେ ଆବଦ୍ଧ । ସାଧାରଣତଃ 3R ଉଦ୍ଦେଶ୍ୟ ହେଲା ସାଧାରଣ ଭାବେ ପଠନ, ଲିଖନ ଓ ଅଙ୍କର ବାରିସୂତ୍ରର ସମ୍ୟକ୍ ଜ୍ଞାନ ସୃଷ୍ଟି; ଖବର କାଗଜ, ପୁସ୍ତିକା, Pamphlet ଆଦି ପଢ଼ି ବୁଝି ପାରିବା; ଦରଖାସ୍ତ ଓ ନିଜର ସାଧାରଣ ହିସାବ କିତାବ ଲେଖିବା ଓ ଗଣିତର ହରଣ, ଗୁଣନ, ମିଶାଣ, ଫେଡ଼ାଣ ଆଦି ଦୈନନ୍ଦିନ ଜୀବନରେ ଆବଶ୍ୟକ ହେଉଥିବା ସାଧାରଣ ଅଙ୍କ କଷିବା । ବୈଜ୍ଞାନିକ କୃଷି ପ୍ରଣାଳୀରେ କୃଷି-ଉତ୍ପାଦନ ବୃଦ୍ଧି କରିବା, ଏହି ଉତ୍ପାଦିତ ଦ୍ରବ୍ୟକୁ ବଜାରରେ ଉପଯୁକ୍ତ ସମୟରେ ବିକ୍ରୟକରି ଦୁଇପଇସା ରୋଜଗାର କରବା ସମ୍ବନ୍ଧ ଜ୍ଞାନ ହେବାପାଇଁ ସାଧାରଣ ଭାବେ ଲେଖିପଢ଼ି ଜାଣିବା ନିତାନ୍ତ ଦରକାର ଓ ଅନ୍ୟପକ୍ଷରେ ସୁଦୃଢ଼ ଗଣତନ୍ତ୍ର ପ୍ରତିଷ୍ଠା ତଥା ଗଣତନ୍ତ୍ରର ସୁରକ୍ଷା ପାଇଁ ଏହି ସାକ୍ଷରତା ଯୋଜନା ବିଶେଷ ସହାୟକ । ଏହି କାର୍ଯ୍ୟକ୍ରମର ଦ୍ୱିତୀୟ ଲକ୍ଷ୍ୟ ହେଲା, ଦେଶର ଗ୍ରାମାଞ୍ଚଳରେ କାର୍ଯ୍ୟକାରୀ ହେଉଥିବା ବିକାଶମୂଳକ ଯୋଜନା ସହ ଜନସାଧାରଣଙ୍କୁ ପରିଚିତ ତଥା ଅଂଶୀଦାର କରି ଗ୍ରାମାଞ୍ଚଳର ସାମାଜିକ ଓ ଅର୍ଥନୈତିକ ଜୀବନର ଅଭିବୃଦ୍ଧି ଘଟାଇବା । ପୁନଶ୍ଚ, ଗ୍ରାମ୍ୟମଙ୍ଗଳ ଓ ବିକାଶ, ସ୍ୱାସ୍ଥ୍ୟରକ୍ଷା ଓ ପରିଷ୍କାର-ପରିଛନ୍ନତା, ସାମାଜିକ ଅନ୍ଧବିଶ୍ୱାସ ଓ କୁସଂସ୍କାର ଦୂରୀକରଣ, ଜନସଂଖ୍ୟା ନିୟନ୍ତ୍ରଣ ଜନିତ ଶିକ୍ଷା ଓ ଚେତନା ବୃଦ୍ଧି ଘଟାଇବା ଏହାର ଅନ୍ୟ ଏକ ଲକ୍ଷ୍ୟ । ଏତଦ୍‌ବ୍ୟତୀତ ଗଣତାନ୍ତ୍ରିକ ଅନୁଷ୍ଠାନ ଗୁଡ଼ିକର କାର୍ଯ୍ୟ ଓ ସେଗୁଡ଼ିକ

ପ୍ରତି ଜନସାଧାରଣଙ୍କ ଦାୟିତ୍ୱ ଓ କର୍ତ୍ତବ୍ୟ ସମ୍ବନ୍ଧରେ ଗ୍ରାମାଞ୍ଚଳର ଜନସାଧାରଣଙ୍କ ମଧ୍ୟରେ ଗଣତାନ୍ତ୍ରିକ ଚେତନା ସୃଷ୍ଟି କରିବା ମଧ ଏହି ଯୋଜନାର ଅନ୍ତର୍ଭୁକ୍ତ । ତୃତୀୟତଃ ଗ୍ରାମାଞ୍ଚଳରେ ବାସ କରୁଥିବା ଦରିଦ୍ର ଜନତାର ଉତ୍ପାଦନ ଓ ଆୟବୃଦ୍ଧି ଏବଂ ନିଯୁକ୍ତି ପାଇଁ କାର୍ଯ୍ୟକାରୀ ହେଉଥିବା ବିକାଶମୂଳକ ଯୋଜନା ଗୁଡ଼ିକ ସହ ଏହି ଯୋଜନାର ସୁସମ୍ପର୍କ ସ୍ଥାପନ କରି ଜନସାଧାରଣଙ୍କ ଆର୍ଥିକ ବିକାଶ କରିବା । ବର୍ତ୍ତମାନ କାର୍ଯ୍ୟକାରୀ ହେଉଥିବା ଯୋଜନା ଗୁଡ଼ିକ ମଧ୍ୟରେ ଗ୍ରାମାଞ୍ଚଳର ଦରିଦ୍ରତମ ପରିବାରଙ୍କ ଅର୍ଥନୈତିକ ପୁନର୍ବସତି (E.R.R.P.) ସମନ୍ୱିତ ଗ୍ରାମ୍ୟ - ଉନ୍ନୟନ କାର୍ଯ୍ୟକ୍ରମ, ଆତ୍ମନିଯୁକ୍ତି ପାଇଁ ଗ୍ରାମ୍ୟଯୁବକଙ୍କ ତାଲିମ, କୃଷି ବିଜ୍ଞାନ କେନ୍ଦ୍ର, ଜାତୀୟ ଗ୍ରାମ୍ୟନିଯୁକ୍ତି କାର୍ଯ୍ୟକ୍ରମ, ଗ୍ରାମାଞ୍ଚଳରେ ମହିଳା ଓ ଶିଶୁବିକାଶ, ଗ୍ରାମ୍ୟ ଭୂମିହୀନ ଲୋକମାନଙ୍କୁ ନିର୍ଭରଯୋଗ୍ୟ କର୍ମଯୋଗାଣ କାର୍ଯ୍ୟକ୍ରମ ଇତ୍ୟାଦି ସାକ୍ଷରତା ଅଭିବୃଦ୍ଧି ଯୋଜନା ଗୁଡ଼ିକ ସହ ସମ୍ବନ୍ଧ ସ୍ଥାପନ କରିବା ମଧ ଏହି ଲକ୍ଷ୍ୟର ଏକ ଅଂଶ ଅଟେ ।

ଦେଶର ଆଦିବାସୀ, ହରିଜନ, ଅନୁନ୍ନତ ଶ୍ରେଣୀ ତଥା ମହିଳା ମାନଙ୍କ ସାକ୍ଷରତା ବୃଦ୍ଧି ପାଇଁ ବିଶେଷ ଯତ୍ନ ନେବା ଉଚିତ । କାରଣ ଏମାନେ ସମସ୍ତେ ଦେଶର ଗଣତନ୍ତ୍ରର ଅଂଶୀଦାର ଅଟନ୍ତି । ଦେଶରେ ପୁରୁଷ ସାକ୍ଷର ସଂଖ୍ୟା ଶତକଡ଼ା ୩୯.୪୯ ଥିବା ସ୍ଥଳେ ମହିଳା ସାକ୍ଷରତା ଶତକଡ଼ା ୨୪.୮୨ । ଏହି ମହିଳାମାନଙ୍କ ମଧ୍ୟରେ ଆଦିବାସୀ ଓ ହରିଜନ ମହିଳାଙ୍କ ସାକ୍ଷରତା ନଗଣ୍ୟ । ନିରକ୍ଷର ମହିଳାମାନଙ୍କୁ ନେଇ ସାମାଜିକ, ସାଂସ୍କୃତିକ ଓ କୃଷିବିକାଶ କାର୍ଯ୍ୟରେ ନିୟୋଜିତ କରିବା ଆଦୌ ସମ୍ଭବ ନୁହେଁ । ୧୫ ରୁ ୩୫ ବୟସ ସୀମାରେ ପ୍ରାୟ ଏକ କୋଟି ଆଦିବାସୀ ଓ ହରିଜନ ମହିଳା ନିରକ୍ଷର । ଏମାନଙ୍କୁ ସାକ୍ଷର ନକଲେ ଦେଶର ବିକାଶ କଥା ଚିନ୍ତା କରିବା ନିରର୍ଥକ ।

## ଯୋଜନାର ସଫଳ ରୂପାୟନ ପାଇଁ ବିଭିନ୍ନ ପରିକଳ୍ପନା :

୧୫ ରୁ ୩୦ ବୟସ ସୀମା ମଧ୍ୟରେ ୯ କୋଟି ଲୋକଙ୍କୁ ବର୍ତ୍ତମାନ ସାକ୍ଷର କରିବାକୁ ହେବ । ଏହା ଏକ ଜାତୀୟ ଦାୟିତ୍ୱ । ଏହାର ସଫଳ କାର୍ଯ୍ୟକାରିତା ପାଇଁ ଦେଶର ଶିକ୍ଷିତ ଯୁବସମାଜ ଉପରେ ଦାୟିତ୍ୱ ଦିଆଯାଉ । ବିଶ୍ୱବିଦ୍ୟାଳୟର କୌଣସି ଛାତ୍ର ଅନ୍ତତଃ ଦଶଜଣଙ୍କୁ ସାକ୍ଷର ନକଲେ ତାକୁ ସ୍ନାତକ ଉପାଧି ଦିଆଯିବା ଉଚିତ ନୁହେଁ । ତାହା ମଧ କାମଚଳା ନୁହେଁ । ନବସାକ୍ଷର ମାନଙ୍କ ରୀତିମତ ପରୀକ୍ଷା ହେବ ଓ ପ୍ରମାଣପତ୍ର ଦିଆଯିବ । ପ୍ରମାଣପତ୍ରରେ ସାକ୍ଷରତା ଦାୟିତ୍ୱରେ ଥିବା ଛାତ୍ରଙ୍କ ନାମ ଉଲ୍ଲେଖ ହେବ । ଛାତ୍ରର ଚାକିରି ପାଇଁ ସାକ୍ଷାତକାର ବେଳେ ତତ୍ପ୍ରତି ବିଶେଷ ଗୁରୁତ୍ୱ ଦିଆଯିବ । ନେହେରୁ ଯୁବକେନ୍ଦ୍ର, ଯୁବକ ସଂଘ, ମହିଳା ସମିତି ଓ ସ୍ୱେଚ୍ଛାସେବୀ ଅନୁଷ୍ଠାନ ଗୁଡ଼ିକ ପ୍ରତିବର୍ଷ ଅନ୍ତତଃ ୨୫ ଜଣଙ୍କୁ ସାକ୍ଷର ନକଲେ ସେମାନଙ୍କୁ ସରକାରୀ ଅନୁଦାନ ଦିଆଯିବ ନାହିଁ ଓ ଏଥିପାଇଁ ପ୍ରୋତ୍ସାହନ ମୂଳକ ପୁରସ୍କାର ବ୍ୟବସ୍ଥା କରାଯିବ । ଗ୍ରାମାଞ୍ଚଳରେ ରହିଥିବା ପ୍ରାଥମିକ ଓ ମାଧ୍ୟମିକ ଶିକ୍ଷକଙ୍କୁ ମଧ ଏହି ଦାୟିତ୍ୱ ଦେଇ ନିର୍ଦ୍ଦିଷ୍ଟ ସମୟସୀମା ମଧ୍ୟରେ ଏକ ନିର୍ଦ୍ଦିଷ୍ଟ ସଂଖ୍ୟକ ସାକ୍ଷର ବାହାର କଲେ ସେମାନଙ୍କୁ

ଦୁଇଟି ବାର୍ଷିକ-ବୃଦ୍ଧି-ଦରମା, ପ୍ରୋତ୍ସାହନ ମୂଳକ ପୁରସ୍କାର ସ୍ୱରୂପ ଦିଆଯିବ ଓ ଦକ୍ଷତା ପ୍ରତିବନ୍ଧକ (E.B) ଅତିକ୍ରମ ପାଇଁ ବିଚାର କଲାବେଳେ ଏହା ବିଚାରକୁ ନିଆଯିବ। ବିଶେଷତଃ ରାଜ୍ୟ ଓ ଜାତୀୟ ପୁରସ୍କାର ପ୍ରାପ୍ତ ପାଇଁ ଶିକ୍ଷକଙ୍କ ସାକ୍ଷରତା ଅଭିବୃଦ୍ଧିରେ ସେମାନଙ୍କ ଅବଦାନ ପାଇଁ ସ୍ୱତନ୍ତ୍ର ନମ୍ବର ରହିବା ଉଚିତ। ଆନୁଷ୍ଠାନିକ ଶିକ୍ଷା ସହ ଅଣଆନୁଷ୍ଠାନିକ ଶିକ୍ଷାର ସମ୍ପର୍କ ରଖି ଥାଇଲାଣ୍ଡ ସରକାରଙ୍କ ସାକ୍ଷରତା ଯୋଜନା ବିଶେଷ ଫଳପ୍ରଦ ହୋଇଛି। ବାସ୍ତବିକତା ଦୃଷ୍ଟିକୋଣରୁ ସମସ୍ତ ବିଷୟ ବିଚାର ନକରି ବିଶ୍ୱବିଦ୍ୟାଳୟ ସ୍ତରରେ ବା ଜିଲ୍ଲାସ୍ତରରେ ଉଚ୍ଚତର ପଦପଦବୀ ସୃଷ୍ଟି କଲେ ନିରକ୍ଷରତା ହ୍ରାସ ପାଇଁ ଆଦୌ ସହାୟକ ହେବନାହିଁ।

ପୁନଶ୍ଚ, ସାକ୍ଷରତା ପାଇଁ ନିର୍ଦ୍ଦିଷ୍ଟ ସମୟସୀମା ନରଖି ନିର୍ଦ୍ଦିଷ୍ଟ କେନ୍ଦ୍ରରେ ଶିକ୍ଷା ପୂର୍ଣ୍ଣାଙ୍ଗ ପ୍ରାପ୍ତ ହେବା ପର୍ଯ୍ୟନ୍ତ କେନ୍ଦ୍ରକୁ ଚାଲୁ ରଖିବା ଉଚିତ। ଶିକ୍ଷା ଶେଷରେ ଜିଲ୍ଲା ସାକ୍ଷରତା ଯୋଜନା ଅଧିକାରୀ ଶିକ୍ଷାର୍ଥୀ ମାନଙ୍କ ପରୀକ୍ଷା ନକରି ଶିକ୍ଷାବିଭାଗ ପରୀକ୍ଷା କରିବା ଉଚିତ। ଏହାଦ୍ୱାରା ସାକ୍ଷରତା ବୃଦ୍ଧି କାର୍ଯ୍ୟକ୍ରମ ଯଥାଯଥ ଭାବେ କାର୍ଯ୍ୟକାରୀ ହୋଇଛି କି ନା ଜଣାପଡ଼ିବ। ଶିକ୍ଷାର୍ଥୀଙ୍କୁ ଉଭୟ ଲିଖନ, ପଠନ ଓ ସାଧାରଣ ଅଙ୍କ ପରୀକ୍ଷା କରାଯିବା ଉଚିତ। ଆମେ ଯଦି ଯୋଜନା କରିବା ତେବେ ତାହା ଠିକ୍ ଭାବେ କାର୍ଯ୍ୟକରୀ ହେବା ଉଚିତ। ନଚେତ୍, ଯୋଜନା ବରଂ ନ କରିବା ଭଲ।

ଆମର ଲକ୍ଷ୍ୟ ହେଲା ବୃତ୍ତିଭିତ୍ତିକ ସାକ୍ଷରତା ଅର୍ଥାତ୍ ନବସାକ୍ଷରମାନଙ୍କ ସାକ୍ଷରତା ସଙ୍ଗେ ସଙ୍ଗେ ଦୈନନ୍ଦିନ ଜୀବନରେ ସାହାଯ୍ୟ କଲା ଭଳି ତାଲିମ ଦେବା। ଗୋଷ୍ଠୀ ଉନ୍ନୟନ ଅଧିକାରୀଙ୍କ କାର୍ଯ୍ୟାଳୟରେ ସମସ୍ତ ବିଭାଗର କର୍ମଚାରୀ କାର୍ଯ୍ୟ କରନ୍ତି। ଏକ ସୁଚିନ୍ତିତ କାର୍ଯ୍ୟକ୍ରମ କରି କୃଷି ସଂପ୍ରସାରଣ ଅଧିକାରୀ, ପଞ୍ଚାୟତ ସଂପ୍ରସାରଣ ଅଧିକାରୀ, ସମବାୟ ଅଧିକାରୀ, ଆଦିବାସୀ ମଙ୍ଗଳ ଅଧିକାରୀ, ବନ ସଂରକ୍ଷକ, ବିଦ୍ୟାଳୟ ଅନୁନୀରିକ୍ଷକ ଆଦି କର୍ମଚାରୀ ଗଣ ରବିବାର ଓ ଛୁଟି ଦିନ ମାନଙ୍କରେ ଏହି ସାକ୍ଷରତା କେନ୍ଦ୍ରମାନଙ୍କୁ ଯାଇ ନିଜ ବିଭାଗର କାର୍ଯ୍ୟକ୍ରମ ସମ୍ବନ୍ଧରେ କେନ୍ଦ୍ରରେ ବୁଝାଇବା ଉଚିତ। ଫଳରେ ଦୈନନ୍ଦିନ ଜୀବନର କୃଷି କ୍ଷେତ୍ରରେ ବା ସାଧାରଣ ଜୀବନ ଯାପନ କ୍ଷେତ୍ରରେ ଘଟୁଥିବା ଅନେକ ସମସ୍ୟାର ସମାଧାନର ଉପାୟ ସେମାନେ ପାଇ ପାରନ୍ତେ। ବର୍ତ୍ତମାନ ସାକ୍ଷରତା କେନ୍ଦ୍ରସହ ଏହି କ୍ଷେତ୍ର ଅଧିକାରୀମାନଙ୍କ କୌଣସି ସମ୍ବନ୍ଧ ନାହିଁ। ଏହା ଏକ ସ୍ୱତନ୍ତ୍ର ଯୋଜନା ନୁହେଁ ବରଂ ଏକ ସମନ୍ୱିତ ଯୋଜନା ଅଟେ।

ସାକ୍ଷରତା ବୃଦ୍ଧି କାର୍ଯ୍ୟକ୍ରମରେ ନିଯୁକ୍ତ ଥିବା ଶିକ୍ଷକ ଓ ପରିଦର୍ଶକମାନଙ୍କ ନିଷ୍ଠା, ସେମାନଙ୍କ ବାରମ୍ବାର ନବୀକରଣ ତାଲିମ ଉପରେ ଯୋଜନାର ସଫଳତା ନିର୍ଭର କରେ। ୧୫ ରୁ ୩୫ ବର୍ଷ ବୟସ୍କ ନିରକ୍ଷର ଲୋକଙ୍କୁ ଶିକ୍ଷା ଦେବାପାଇଁ ମି.ଇ. ପାସ୍ ଯୋଗ୍ୟତା ସମ୍ପନ୍ନ ଶିକ୍ଷକ ନିଯୁକ୍ତି ଦେବାର ବ୍ୟବସ୍ଥା ଅଛି। ବର୍ତ୍ତମାନର ୧୫ ବର୍ଷ ବୟସ୍କ ଜଣେ ମି.ଇ. ପାସ୍ ଶିକ୍ଷକ ପ୍ରତି ଶିକ୍ଷା ନିମନ୍ତେ ଜଣେ

୩୫ ବର୍ଷ ବୟସ୍କ ବ୍ୟକ୍ତିର କେତେଦୂର ଆସ୍ଥା ରହିବ ଏହା ବିଚାର ଯୋଗ୍ୟ । ଅନ୍ୟ ପକ୍ଷରେ ମାସିକ ଏକଶହ ଟଙ୍କା ମାନଦେୟରେ ସେ କେତେଦୂର ଆନ୍ତରିକତା ସହ କାର୍ଯ୍ୟକରିବେ ଏହା ମଧ ପ୍ରଣିଧାନର ବିଷୟ । ଏହି ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟକ୍ରମ ପାଇଁ ଅନ୍ତତଃ ମାସକୁ ତିନିଶହ ଟଙ୍କା ମାନଦେୟର ବ୍ୟବସ୍ଥା କରି ମାଟ୍ରିକ୍ ପାସ ଶିକ୍ଷକ ନିଯୁକ୍ତ ହେଲେ ଏହି ଯୋଜନାର କାର୍ଯ୍ୟକରିତା ଆଶାନୁରୂପ ହେବ ବୋଲି ବିଶ୍ୱାସ କରାଯାଏ ।

## ସାକ୍ଷରତା ବୃଦ୍ଧି ଓ ନବ ସାକ୍ଷରଙ୍କ ପାଇଁ ପରବର୍ତ୍ତୀ କାର୍ଯ୍ୟକ୍ରମ :

ସାକ୍ଷରତା ପରେ ଅଭ୍ୟାସ ପାଇଁ ସେମାନଙ୍କ ନିର୍ଦ୍ଦିଷ୍ଟ ବୃତ୍ତି ସମ୍ବନ୍ଧୀୟ ପୁସ୍ତକ ଯୋଗାଇ ଦେଲେ ସେମାନେ ପଢ଼ିବା ପାଇଁ ଆଗ୍ରହୀ ହେବେ ଓ ଉକ୍ତ ପୁସ୍ତକ ସେମାନଙ୍କ ବୃତ୍ତିରେ ସହାୟକ ହେବ । ପରୀକ୍ଷାର ଏକବର୍ଷ ପରେ ପୁଣି ସାତଦିନିଆଁ ଏକ ଆଲୋଚନା କାର୍ଯ୍ୟକ୍ରମର ବ୍ୟବସ୍ଥା କରାଯିବା ଉଚିତ ଓ ଉକ୍ତଦିନ ସେମାନଙ୍କ ବୃତ୍ତିକୁ ସହାୟକ ହେଲାଭଳି ଉପକରଣ ପ୍ରୋତ୍ସାହନ ମୂଳକ ବ୍ୟବସ୍ଥା ରୂପେ ଯୋଗାଇ ଦେବା ଉଚିତ । ଏତଦ୍ ବ୍ୟତୀତ ଯେଉଁ କୃଷକ ନିଜ ବଳଦ ଓ ପୋତ୍ ପିଠିରେ, 'ଆମେ ଦୁଇ ଆମର ଦୁଇ', 'ଆମେ ସମସ୍ତେ ଭାଇ ଭାଇ' ଆଦି ସ୍ଲୋଗାନ ଲେଖିବେ ସେମାନଙ୍କ କୃଷି ପାଇଁ ରିହାତି ଦରରେ ସାର ଓ ବିହନ ଯୋଗାଣ ବ୍ୟବସ୍ଥା କଲେ ଉକ୍ତ ସ୍ଲୋଗାନ ଗୁଡିକ ସାକ୍ଷରତା ପରବର୍ତ୍ତୀ ସମୟରେ ଅକ୍ଷର ଭୁଲି ନଯିବା ପାଇଁ ସାହାଯ୍ୟ କରିବ । ଗ୍ରାମମାନଙ୍କ କାନ୍ଥବାଡ଼ରେ, ବିଦ୍ୟାଳୟ ଓ ଅନ୍ୟାନ୍ୟ ଅନୁଷ୍ଠାନର କାନ୍ଥରେ ବିଭିନ୍ନ ପ୍ରକାର ସ୍ଲୋଗାନ ଲେଖାଯିବା ଉଚିତ ଯାହାକି ନବସାକ୍ଷର ଗଣ ବିଶେଷ ଆଗ୍ରହ ସହ ପଢ଼ିବେ ।

ଜାତୀୟ ସରକାର ସାକ୍ଷରତା ବୃଦ୍ଧି ତଥା ଏକ ସାମୂହିକ ବିକାଶକୁ ଲକ୍ଷ୍ୟରେ ରଖି ଏହି ସାକ୍ଷରତା ଯୋଜନାର ସଫଳ ରୂପାୟନ ଦିଗରେ ଅଗ୍ରସର ହେବେ ବୋଲି ଆଶା କରାଯାଏ ।

୬

## ଶ୍ରେଣୀଗୃହ ଓ ଶିକ୍ଷକଙ୍କ ବୈଶିଷ୍ଟ୍ୟ :

କୋଠାରୀ କମିଶନଙ୍କ ରିପୋର୍ଟରେ ଉଲ୍ଲେଖ ଅଛି ଯେ - "ଗୋଟିଏ ଜାତିର ଭାଗ୍ୟ ଶ୍ରେଣୀ କୋଠରୀ ଭିତରେ ନିୟନ୍ତ୍ରିତ ହୁଏ ।" ଏହି ଉକ୍ତିର ମହତ୍ତ୍ୱ ଯେ କୌଣସି ଶିକ୍ଷକ ବା ଶିକ୍ଷାବିତ୍ ଗଭୀର ଭାବେ ଚିନ୍ତା କଲେ ଅନୁଭବ କରିପାରିବେ । ଚାରିକାନ୍ଥ ବିଶିଷ୍ଟ ଆବଦ୍ଧ କୋଠରୀ ଗୋଟିଏ ଜାତିର ଭାଗ୍ୟ ନିୟନ୍ତା । ଜଣେ ଶିଶୁ ଦୈନିକ ଛଅଘଣ୍ଟା ସମୟ ସେହି କୋଠରୀ ଭିତରେ କଟାଏ । ଶିଶୁ ଏକ ମାଟି ପିଣ୍ଡୁଳା ସଦୃଶ । ତାକୁ ଶିକ୍ଷକ ଯେମିତି ଗଢ଼ିବେ, ଭବିଷ୍ୟତରେ ସେ ସେହି ରୂପ ନେବ । ତେଣୁ ଏହି ଛଅଘଣ୍ଟା ମଧ୍ୟରେ ଶିକ୍ଷକଙ୍କ କାମ ଅତି ଦାୟିତ୍ୱପୂର୍ଣ୍ଣ । ସେ ଚାହିଁଲେ ଶିଶୁକୁ ସି.ଭି. ରମଣଙ୍କ ପରି

ଏକ ବିଶିଷ୍ଟ ବୈଜ୍ଞାନିକ ରୂପେ ଗଢ଼ିପାରିବେ ବା ଗାନ୍ଧିଜୀଙ୍କ ପରି ଜଣେ ଜନସେବୀ କରିପାରିବେ ବା ବିଶ୍ୱଗୁରୁ ରବୀନ୍ଦ୍ରଙ୍କ ପରି ଜଣେ ବିଶ୍ୱବିଖ୍ୟାତ କବି କରି ପାରିବେ ବା ଏସିଆର ଦୌଡ଼ରାଣୀ ପି.ଟି. ଉଷାଙ୍କ ପରି ଜଣେ ଏସିଆ ବିଖ୍ୟାତ ଖେଳାଳୀ କରିବେ ବା ଦୁର୍ଦ୍ଧର୍ଷ ଡ଼କାୟତ ଦସ୍ୟୁରାଜା ମାଖନ ସିଂ ଓ ଦସ୍ୟୁରାଣୀ ଫୁଲନ୍ ଦେବୀର ରୂପ ଦେବେ ତାହା ତାଙ୍କ ଦକ୍ଷ କର୍ମକୁଶଳତା ଉପରେ ନିର୍ଭର କରେ । ଏଣୁ ଏହି ଉକ୍ତି ବାସ୍ତବ ଭିତ୍ତି ଉପରେ ପ୍ରତିଷ୍ଠିତ ନୁହେଁ କି ?

ଜାତି ଓ ସମାଜ ସ୍ଥାଣୁ ନୁହେଁ, ଗତିଶୀଳ । ପୁଣି ବିଂଶ ଶତାବ୍ଦୀରେ ସମାଜ ଆହୁରି ଗତିଶୀଳ ତଥା ବେଗବାନ୍ ହୋଇ ପଡ଼ିଛି । ବର୍ତ୍ତମାନ ଅବସ୍ଥା ଏପରି ଯେ ଆଜି ଯାହା ନୂଆ, ଆସନ୍ତା କାଲି ତାହା ପୁରୁଣା । କୌଣସି ପୁସ୍ତକ ବା ପତ୍ରିକା ଆଜି ନ ପଢ଼ି ଯଦି ସାଇତି ରଖାଯାଏ, ତାହା କାଲିକି ପୁରୁଣା । ଗବେଷଣା ଫଳରେ ପୁରାତନ ଚିନ୍ତାଧାରା ସ୍ଥାନରେ ପ୍ରତ୍ୟହ ନୂତନ ଚିନ୍ତାଧାରା ସ୍ଥାନ ପାଉଛି ।

ଏଣୁ ଏହି ଦ୍ରୁତ ଗତିଶୀଳ ଓ ନୂତନ ଅଭିମୁଖୀ ସମାଜକୁ ଦୃଷ୍ଟିରେ ରଖି ଶିକ୍ଷକ ଯଦି ସମୟର କ୍ଷିପ୍ର ପ୍ରବହମାନ ସ୍ରୋତରେ ନିଜକୁ ସାମିଲ ନକରନ୍ତି, ତେବେ ସମାଜ ଆଗେଇ ଯିବ ଓ ଶିକ୍ଷକ ପଛରେ ପଡ଼ି ରହିବେ । ସେ ସ୍ଥାଣୁ ହେଲେ ଛାତ୍ର ତଥା ସମାଜ ଦ୍ୱାରା ଅନାବୃତ ଓ ଉପେକ୍ଷିତ ହେବା ସ୍ୱାଭାବିକ । ଜ୍ଞାନ ରାଜ୍ୟରେ ପ୍ରତ୍ୟହ ଯେଉଁ ବିସ୍ଫୋରଣ ଘଟୁଛି ତତ୍‌ପ୍ରତି ଅନୁଧ୍ୟାନ କରି ଶିକ୍ଷକଙ୍କ ନିଜର ଗତିପଥକୁ ନିର୍ଦ୍ଧାରଣ କରିବାକୁ ହେବ । ଯେଉଁ ଶିକ୍ଷକ ନିଜକୁ କାର୍ଯ୍ୟଶୀଳ ଓ ଜ୍ଞାନାଭିମୁଖୀ କରିପାରିବେ, ସେ ହିଁ କେବଳ ସମାଜ ଦ୍ୱାରା ଆଦୃତ ଓ ଗୁରୁଙ୍କ ପୂଜ୍ୟ ଆସନକୁ ଅଳଂକୃତ କରିବେ ।

## ଶ୍ରେଣୀ ଗୃହ ଓ ଶିକ୍ଷକଙ୍କ ଭୂମିକା :

ବିଦ୍ୟାଳୟରେ ସୁସ୍ଥ ଓ ଶୈକ୍ଷିକ ପରିବେଶ ସୃଷ୍ଟି ହେବା ପ୍ରଧାନ ଶିକ୍ଷକଙ୍କ ନେତୃତ୍ୱ ଓ ସହକାରୀ ଶିକ୍ଷକଙ୍କ ବିଦ୍ୟାଳୟ ତଥା ଶିକ୍ଷାଦାନ ପ୍ରତି ଆନ୍ତରିକତା ଉପରେ ବିଶେଷ ଭାବେ ନିର୍ଭର କରେ । ଏତଦ୍‌ବ୍ୟତୀତ, ବୟୋଜ୍ୟେଷ୍ଠ ଶିକ୍ଷକଙ୍କ କାର୍ଯ୍ୟକଳାପ କନିଷ୍ଠ ଉପରେ ପ୍ରଭାବ ପକାଇଥାଏ । ଶିକ୍ଷକଙ୍କ ପ୍ରଧାନ କର୍ତ୍ତବ୍ୟ ହେଉଛି ଶ୍ରେଣୀ କୋଠରୀକୁ ଯଥା ସମୟରେ ଯିବା । ଏତଦ୍ୱାରା ଛାତ୍ରମାନେ ନିୟମିତତା ଜ୍ଞାନ ଆହରଣ କରିବା ସଂଗେ ସଂଗେ କୌଣସି ପ୍ରକାର ବିଶୃଙ୍ଖଳାର ଆଶ୍ରୟ ନେବେ ନାହିଁ । ଶିକ୍ଷକ ଶ୍ରେଣୀକାର୍ଯ୍ୟ ଆରମ୍ଭ କରିବା ପୂର୍ବରୁ ଶ୍ରେଣୀକୁ ଯିବା ଆହୁରି ଭଲ । କାରଣ, ସେ ଶ୍ରେଣୀକାର୍ଯ୍ୟ ଆରମ୍ଭ ପୂର୍ବରୁ ଶ୍ରେଣୀସଜ୍ଜା ପିଲାଙ୍କ ବସିବା ତଥା ପାଠ୍ୟୋପକରଣ ଗୁଡ଼ିକ ଯଥା ସ୍ଥାନରେ ରଖିବା ପ୍ରତି ଦୃଷ୍ଟି ଦେଇପାରିବେ । ଶିକ୍ଷାଦାନ ଓ ଗ୍ରହଣ ଉଭୟ ଶିକ୍ଷକ ଓ ଛାତ୍ରଙ୍କ ପକ୍ଷରେ ଏକ ମାନସିକ ପ୍ରସ୍ତୁତି । ଛାତ୍ରମାନେ ଶ୍ରେଣୀରେ ସକ୍ରିୟ ଅଂଶଗ୍ରହଣ ପାଇଁ ଶିକ୍ଷକ ପାଠଟୀକାରେ ଆଗରୁ ବ୍ୟବସ୍ଥା କରିଥିବେ । ଫଳରେ ଶ୍ରେଣୀ ଗୃହର ବାତାବରଣ ଶିକ୍ଷାଦାନ ସମୟରେ ନିଷ୍କ୍ରିୟ ବା ନିରାନନ୍ଦ ହେବନାହିଁ । ଶିକ୍ଷକଙ୍କ ବେଶଭୂଷା, ପରିଷ୍କାର ପରିଛନ୍ନତା, ହସହସ ମୁହଁ, ଛାତ୍ରଛାତ୍ରୀଙ୍କ ପ୍ରତି ସ୍ନେହ, ଶ୍ରଦ୍ଧା ଓ

ସହାନୁଭୂତି ତଥା ଉପଯୁକ୍ତ ପାଠ୍ୟ ପ୍ରସ୍ତୁତି ଓ ପରିବେଶ ପିଲାମାନଙ୍କ ଶିକ୍ଷାପ୍ରତି ଆଗ୍ରହ ସୃଷ୍ଟି କରିବାରେ ବିଶେଷ ସହାୟକ ହୋଇଥାଏ । ସମସ୍ତ ଛାତ୍ରଛାତ୍ରୀଙ୍କୁ ସମାନ ଦୃଷ୍ଟିରେ ଦେଖିବା, ସମସ୍ତଙ୍କୁ ବାଣ୍ଟି ପ୍ରଶ୍ନ ପଚାରିବା, ଠିକ୍ ଉତ୍ତର ପାଇଁ ଉତ୍ସାହଜନକ ମନ୍ତବ୍ୟ ଦେବା ଓ ଦୁର୍ବଳ ଛାତ୍ରଙ୍କୁ ନିରୁତ୍ସାହ ନକରିବା ତଥା ସହାନୁଭୂତି ପ୍ରଦର୍ଶନ କରିବା ସେମାନଙ୍କ ସୁପ୍ତ-ପ୍ରବୃତ୍ତିର ବିକାଶରେ ବିଶେଷ ସାହାଯ୍ୟ କରେ । ଶ୍ରେଣୀ କୋଠରୀର ବିଭିନ୍ନ ସ୍ଥାନରେ ବସିଥିବା ଛାତ୍ରଛାତ୍ରୀଙ୍କୁ ସମବଣ୍ଟନ କରି ପ୍ରଶ୍ନ ପଚାରିବା ପ୍ରଣାଳୀକୁ ଇଂରେଜ ଶିକ୍ଷାବିତ୍ Marland M. (1975) Light House Technique ବୋଲି ନାମକରଣ କରିଛନ୍ତି । ଏତଦ୍ୱାରା ଶ୍ରେଣୀ ଗୃହର ନିଷ୍କ୍ରିୟତା ଦୂର ହେବ । ପିଲାଙ୍କୁ କାମ (Assignment) ଦେଇ ଶୀଘ୍ର କାମ ଶେଷ କରିବାପାଇଁ ଉତ୍ସାହିତ କରିବା ନିମନ୍ତେ ଛୁଟି ବା ଖେଳର ବ୍ୟବସ୍ଥା ଥିଲେ ସେମାନେ ଆଗ୍ରହ ସହକାରେ ନିଜର ଦାୟିତ୍ୱ ତୁଲାଇବେ ।

ପିଲାଙ୍କ ଠାରୁ କିପରି ପାଠ (class and home task)ଆଦାୟ କରାଯିବ, ତାହା ଶିକ୍ଷକଙ୍କ ଦାୟିତ୍ୱ ଓ ତା'ର ଉପାୟ ସେ ସ୍ଥିର କରିବେ । ପାଠ ଆଦାୟ ପାଇଁ କୌଣସି ପ୍ରକାର ଦୈହିକ ଦଣ୍ଡ ଦେବା ଦ୍ୱାରା ଫଳ ଓଲଟା ହୁଏ । ଦୈହିକ ଦଣ୍ଡ ଦେବା ଦ୍ୱାରା ପିଲାମନରେ ଭୟ ଓ ବ୍ୟର୍ଥତା ସୃଷ୍ଟି ହୋଇଥାଏ ଓ ପାଠପ୍ରତି ବିମୁଖତା ତଥା ଶିକ୍ଷକଙ୍କ ପ୍ରତି ବୈରତା ମନୋଭାବ ଜାତ ହୁଏ । ଆମେରିକାର ଶିକ୍ଷାବିତ୍ କେନେଡ଼ି ଓ ଉଇଲ୍‌କଟ୍ ଏକ ସର୍ଭେରୁ ଜାଣିପାରିଛନ୍ତି ଯେ ପ୍ରଶଂସା ଦ୍ୱାରା ପିଲାର ଶିକ୍ଷାପ୍ରତି ଯେତିକି ଆଗ୍ରହ ସୃଷ୍ଟି କରାଯାଇପାରେ ଦଣ୍ଡରେ ନୁହେଁ; ବରଂ ଦଣ୍ଡରେ ଫଳ ଓଲଟା ହୋଇଥାଏ । ପାଠରେ ପିଲାର ଦୁର୍ବଳତା ପାଇଁ ଶିକ୍ଷକ କୌଣସି କଟୁକ୍ତି ଓ ବ୍ୟଙ୍ଗୋକ୍ତି ପ୍ରୟୋଗ କରିବା ଅନୁଚିତ । ପିଲାର କାର୍ଯ୍ୟକଳାପ ଦ୍ୱାରା ଯଦି ଶ୍ରେଣୀ ଶୃଙ୍ଖଳାରେ କୌଣସି ଆଞ୍ଚ ଆସୁନାହିଁ ତେବେ ଶିକ୍ଷକ ପିଲାର କାର୍ଯ୍ୟରେ ଅଯଥା ହସ୍ତକ୍ଷେପ କରିବା କିମ୍ବା ତା'ର ଶିଶୁ ସୁଲଭ ଚପଳତା ପାଇଁ ବିରକ୍ତି ପ୍ରକାଶ କରିବା ଉଚିତ ନୁହେଁ । ସେ କ୍ଷେତ୍ରରେ ଶିକ୍ଷକ ନୀରବ ରହିବା ଶ୍ରେୟ । ଅନେକ ସମୟରେ ଶିକ୍ଷକ ପିଲାମାନଙ୍କୁ ବିଭିନ୍ନ ପ୍ରକାର କଟକଣା କରି ଶ୍ରେଣୀ କୋଠରୀରେ ନିରାନନ୍ଦ ବାତାବରଣ ସୃଷ୍ଟି କରିଥାନ୍ତି । ଉପଦେଶାତ୍ମକ ବା ହାସ୍ୟୋଦ୍ଦୀପକ କଥା ଦ୍ୱାରା ଶିକ୍ଷକ ପିଲାମାନଙ୍କର ଯେତିକି ଭକ୍ତିଭାଜନ ହେବେ ବା ସେମାନଙ୍କ ଉପରେ ସୁପ୍ରଭାବ ପକାଇ ପାରିବେ ବା ସେମାନଙ୍କୁ ଶୃଙ୍ଖଳିତ କରି ପାରିବେ, ଦଣ୍ଡ ବା କଟୁକ୍ତି ଦ୍ୱାରା ସେତିକି ସଂଭବ ନୁହେଁ । ବ୍ୟକ୍ତିଗତ ସଂପର୍କ ସ୍ଥାପନ ଦ୍ୱାରା ଶିକ୍ଷକଙ୍କ ନିୟନ୍ତ୍ରଣ ରହେ ପିଲା ଉପରେ ଓ ପିଲା ମଧ୍ୟ ଶିକ୍ଷକଙ୍କ ଆଗରେ ତା'ର ସ୍ୱାଧୀନ ମନୋଭାବ ପ୍ରକାଶ କରିପାରେ । ଏତଦ୍ୱାରା ପିଲାର ପାଠ ଜନିତ ଅସୁବିଧା ଦୂରୀଭୂତ ହୁଏ ।

### ଶ୍ରେଣୀଗୃହ ଓ ଭବିଷ୍ୟତ ସାମାଜିକ ସମସ୍ୟା :

ଶ୍ରେଣୀ କୋଠରୀ ମଧ୍ୟରେ ଶୈକ୍ଷିକ ବାତାବରଣ ସୃଷ୍ଟି କରି ଯଦି ଉପଯୁକ୍ତ ଶିକ୍ଷା ଦିଆଯାଏ ଓ ଛାତ୍ରମନରେ ଜିଜ୍ଞାସୁ ମନୋଭାବ ସୃଷ୍ଟି କରାଯାଏ, ତେବେ ତା'ର ସୁପ୍ତ ପ୍ରବୃତ୍ତିର ସ୍ୱତଃ ଜାଗ୍ରତ ହୁଏ

ଯେପରି କ୍ଷୁଦ୍ର ସ୍ଫୁଲିଙ୍ଗ ଇନ୍ଧନ ସଂଯୋଗରେ ଜାଜ୍ୱଲ୍ୟମାନ ହୋଇଉଠେ । ଶ୍ରେଣୀ କୋଠରୀର ସ୍ମୃତି ଛାତ୍ରମନରେ ଚିରଦିନ ପାଇଁ ଅଭୁଲା ରହେ । ସମାଜରେ ଛାତ୍ର ଯେତେ ଉଚ୍ଚ ଆସନରେ ପ୍ରତିଷ୍ଠିତ ହେଲେ ବି ଉପଯୁକ୍ତ ଶିକ୍ଷକଙ୍କୁ ସେ ସମ୍ମାନ ଦେଇଥାଏ । ସାର୍ ଆଶୁତୋଷ ମୁଖାର୍ଜୀଙ୍କ ଗୁରୁଙ୍କ ସମ୍ମାନ ଦେବା ପରି ଦୃଷ୍ଟାନ୍ତ ସମାଜରେ ବିରଳ ନୁହେଁ । ଅନ୍ୟପକ୍ଷରେ ଯଦି ଶିକ୍ଷକ ନିଜ କାମରେ ଖିଲାପ କରୁଛନ୍ତି, ଜାଣିଶୁଣି ଛାତ୍ରପ୍ରତି ଅବହେଳା ପ୍ରଦର୍ଶନ କରୁଛନ୍ତି, ସେ କେବେହେଲେ ଭବିଷ୍ୟତରେ କୌଣସି ଛାତ୍ରଦ୍ୱାରା ଗୁରୁଙ୍କ ସମ୍ମାନ ପାଇପାରିବେ ନାହିଁ । ଏହାର ଅନେକ ଉଦାହରଣ ଅଛି ଓ ଶିକ୍ଷକ ନିଜେ ମଧ୍ୟ ଅଙ୍ଗେ ନିଭେଇ ଅନୁଭବ କରିବେ । ଶ୍ରେଣୀ କୋଠରୀର ପ୍ରକୃତ ଶିକ୍ଷକ ହିଁ ଜାତିର ଶିକ୍ଷକ ଓ ଦେଶର ସମ୍ମାନାସ୍ପଦ ବ୍ୟକ୍ତି ।

ଶ୍ରେଣୀ କୋଠରୀର ଉପଯୁକ୍ତ ଶିକ୍ଷାଦ୍ୱାରା ଛାତ୍ରମନରୁ ଜାତି, ଧର୍ମ, ବର୍ଣ୍ଣ, ଭାଷା ଓ ଆଞ୍ଚଳିକ ସଂକୀର୍ଣ୍ଣତା ଦୂରହୁଏ ଓ ସେ ଅନ୍ୟପ୍ରତି ଉଦାର ମନୋଭାବ ପୋଷଣ କରେ । ସମାଜ ଓ ଦେଶରେ ବର୍ତ୍ତମାନ ଦେଖାଯାଉଥିବା ସମସ୍ୟାବଳୀ କେବଳ ଉପଯୁକ୍ତ ଶିକ୍ଷାର ଅଭାବରୁ ସୃଷ୍ଟି ହେଉଛି । ଏଣୁ ପ୍ରତ୍ୟେକ ଶିକ୍ଷକ ଶ୍ରେଣୀ କୋଠରୀକୁ ଦେଶ ଓ ଜାତିର ଏକ କ୍ଷୁଦ୍ରରୂପ ବୋଲି ବିଚାର କରି ନିଜର ଗୁରୁଦାୟିତ୍ୱ ଯଥାଯଥ ଭାବେ ତୁଲାଇବାକୁ ଆଗଭର ହେଲେ ସେମାନେ ଦେଶର ଚିର ନମସ୍ୟ ହେବେ ।

୭

## ଆମ ଦେଶର ଶିକ୍ଷା କ୍ଷେତ୍ରରେ ପରିଦର୍ଶନ ବ୍ୟବସ୍ଥା :

'ଶିକ୍ଷା' ଓ 'ପରିଦର୍ଶନ' ଯଦିଓ ଅଙ୍ଗାଙ୍ଗୀ ଭାବେ ଜଡ଼ିତ କିନ୍ତୁ ଆମ ଦେଶର ଶିକ୍ଷା ବ୍ୟବସ୍ଥାରେ ସେ ଦିଗ୍ ପ୍ରତି ବିଶେଷ ଗୁରୁତ୍ୱ ଆରୋପ କରାଯାଏ ନାହିଁ । ପରିଦର୍ଶକ ଶିକ୍ଷକଙ୍କ "Friend, Philosopher and Guide" ଏହା କେବଳ ପୁସ୍ତକଗତ ଓ ଶିକ୍ଷକ ତାଲିମ ସମୟରେ ତାଲିମ ସ୍କୁଲ ଓ କଲେଜର ଶିକ୍ଷକ ଓ ଅଧ୍ୟାପକ ଗଣ କହନ୍ତି ଓ ଗୁରୁ ଛାତ୍ରଗଣ ଶୁଣିଥାନ୍ତି । ସେ ଉକ୍ତି ବାସ୍ତବକ୍ଷେତ୍ରରେ କାର୍ଯ୍ୟକାରୀ ହୁଏନାହିଁ । ଆମ ଦେଶର ପରିଦର୍ଶକଗଣ ଯେଉଁ ବିଦ୍ୟାଳୟ ପରିଦର୍ଶନ କରନ୍ତି, ସେହି ସ୍ତରର ବିଦ୍ୟାଳୟ ମାନଙ୍କ ଶିକ୍ଷାଦାନ ସମ୍ବନ୍ଧରେ ସେମାନଙ୍କର କୌଣସି ଅଭିଜ୍ଞତା ବି ନଥାଏ । ଏହାର ଜ୍ୱଳନ୍ତ ଉଦାହରଣ ସ୍ୱରୂପ ପ୍ରାଥମିକ ସ୍ତରର ପରିଦର୍ଶକ ଗଣଙ୍କୁ ବିଚାରକୁ ନିଆଯାଇପାରେ । ପ୍ରାଥମିକ ସ୍ତରରେ ଯେଉଁଠାରେ କି ପିଲାର ଶିକ୍ଷା ଜୀବନର ମୂଳଦୁଆ ପଡ଼େ ସେହି ସ୍ତରର ପରିଦର୍ଶକମାନଙ୍କ ପ୍ରାଥମିକ ଶିକ୍ଷା ସମ୍ବନ୍ଧରେ ଅଭିଜ୍ଞତା ବା ଜ୍ଞାନ ଆଦୌ ନଥାଏ । ସାଧାରଣତଃ ଜଣେ ନିମ୍ନମାଧ୍ୟମିକ ବା ଉଚ୍ଚ ବିଦ୍ୟାଳୟର ଶିକ୍ଷକ ଅନୁନିରୀକ୍ଷକ ରୂପେ ନିଯୁକ୍ତ ପାଆନ୍ତି । ଉପ-ନିରୀକ୍ଷକ ଓ ଜିଲ୍ଲା ନିରୀକ୍ଷକ ସେହିପରି ଉଚ୍ଚ ବିଦ୍ୟାଳୟ ସ୍ତରରୁ ଆସନ୍ତି ବା ଅନୁନିରୀକ୍ଷକ ସ୍ତରରୁ ପଦୋନ୍ନତି ପାଇ ଯାଆନ୍ତି । ଏ ପ୍ରକାର ପରିଦର୍ଶକଙ୍କ ପ୍ରାଥମିକ ବିଦ୍ୟାଳୟର ଶିକ୍ଷାଦାନ ସମ୍ବନ୍ଧରେ ଅଭିଜ୍ଞତା ନଥାଏ । ଏଣୁ ସେମାନେ ପ୍ରାଥମିକ ଶିକ୍ଷକମାନଙ୍କ ପଥପ୍ରଦର୍ଶକ ରୂପେ କିପରି କାର୍ଯ୍ୟ କରନ୍ତି, ଶିକ୍ଷାବିତ୍ ଗଣ ବିଚାର କରନ୍ତୁ ।

ସେହିପରି ପ୍ରାଥମିକ ପାଠ୍ୟକ୍ରମ (ସିଲାବସ୍) ଶିକ୍ଷାବିତ୍ ମାନଙ୍କ ଦ୍ୱାରା ପ୍ରସ୍ତୁତ ହୁଏ ଯେଉଁମାନଙ୍କ ପ୍ରାଥମିକ ସ୍ତରର ଶିକ୍ଷା ସମ୍ବନ୍ଧରେ ଆଦୌ ଅଭିଜ୍ଞତା ନଥାଏ । ପ୍ରାଥମିକ ପାଠ୍ୟକ୍ରମ ଶିଶୁର ମନୋବିଜ୍ଞାନ, ପରିବେଶ ଓ ସାମାଜିକ ସ୍ତରକୁ ବିଚାର କରି ପ୍ରସ୍ତୁତ କରାଯାଏ ନାହିଁ। କଟକ ସହର ପିଲାଙ୍କ ପାଇଁ ଯେଉଁ ପାଠ୍ୟକ୍ରମ, ସୁଦୂର କୋରାପୁଟ ଆଦିବାସୀ ପିଲାଙ୍କୁ ସେହି ପାଠ୍ୟକ୍ରମ ଅନୁଯାୟୀ ପଢ଼ାଯାଏ । ପୁନଶ୍ଚ ଆଦିବାସୀ ପିଲାଙ୍କ ପରିବେଶ ଓ ସଂସ୍କୃତି ସମ୍ବନ୍ଧରେ ଅନଭିଜ୍ଞ ଶିକ୍ଷକ ନିଯୁକ୍ତି ପାଇ ସେମାନଙ୍କୁ ପଢ଼ାନ୍ତି । ସେହିପରି ପରିଦର୍ଶକ ବୃନ୍ଦ ଶିକ୍ଷକମାନଙ୍କୁ ଆଞ୍ଚଳିକ ଭିତ୍ତିକ ପ୍ରଶିକ୍ଷଣ ପାଇଁ ଦିଗ୍‌ଦର୍ଶନ ଦେବା ଦୂରର କଥା, ସେମାନେ କେବଳ 'କାମଚଳା' ପରିଦର୍ଶନ କରନ୍ତି - 'ଗଲି, ଆଇଲି ଯାହା ଦେଖିଲି ତାହା ଲେଖିଲି' । ଏତଦ୍‌ବ୍ୟତୀତ ଆମ ଦେଶର ଶାସନରେ ଶିକ୍ଷା ବିଭାଗର ପରିଦର୍ଶନ ପ୍ରତି ଆଦୌ ଗୁରୁତ୍ୱ ଦିଆଯାଏ ନାହିଁ। ପ୍ରାଥମିକ ଶିକ୍ଷା ଦାୟିତ୍ୱରେ ଥିବା ଅନୁନିରୀକ୍ଷକ ଗଣ ଗୋଷ୍ଠୀ ଉନ୍ନୟନ ଅଧିକାରୀଙ୍କ ଅଧୀନରେ କାମ କରନ୍ତି ଓ ସେମାନେ ବିଦ୍ୟାଳୟ ପରିଦର୍ଶନ ବ୍ୟତୀତ ଆହୁରି ଅନେକ କାମ କରନ୍ତି । ଏହାର ଦୃଷ୍ଟାନ୍ତ ସ୍ୱରୂପ ଜଣେ ଶିକ୍ଷା-ଅନୁନିରୀକ୍ଷକଙ୍କ ଏକ ବର୍ଷର କାର୍ଯ୍ୟକଳାପର ସୂଚନା ନିମ୍ନରେ ଦିଆଗଲା :

| ମାସର ନାମ | ପରିଦର୍ଶନ (ଦିନ) | ଅନ୍ୟକାମ (ଦିନ) | ସଭାସମିତି (ଦିନ) | ଅଫିସକାମ ଓ ଛୁଟି (ଦିନ) |
|---|---|---|---|---|
| ମାର୍ଚ୍ଚ ୮୬ | ୯ | ୫ | ୨ | ୧୫ |
| ଏପ୍ରିଲ | ୭ | ୧୦ | ୫ | ୮ |
| ମେ | ୫ | ୧୨ | ୫ | ୯ |
| ଜୁନ୍ | ୫ | ୧୪ | ୩ | ୮ |
| ଜୁଲାଇ | ୭ | ୬ | ୭ | ୧୧ |
| ଅଗଷ୍ଟ | ୮ | ୭ | ୪ | ୧୨ |
| ସେପ୍ଟେମ୍ବର | ୮ | ୧୧ | ୩ | ୮ |
| ଅକ୍ଟୋବର | ୮ | ୧୧ | ୩ | ୯ |
| ନଭେମ୍ବର | ୧୦ | ୯ | ୩ | ୮ |
| ଡ଼ିସେମ୍ବର | ୧୦ | ୧୦ | - | ୧୦ |
| ଜାନୁୟାରୀ ୮୭ | ୧୧ | ୮ | ୬ | ୬ |
| ଫେବୃୟାରୀ | ୧୧ | ୧୦ | - | ୮ |
| ମୋଟ୍ | ୯୯ | ୧୧୩ | ୪୧ | ୧୧୨ |

ଏହି ହିସାବରୁ ସ୍ପଷ୍ଟ ଜଣାଯାଏ ଯେ ଜଣେ ଅନୁନିରୀକ୍ଷକ ପ୍ରାଥମିକ ବିଦ୍ୟାଳୟର ପରିଦର୍ଶନରେ ମାସକୁ ହାରାହାରି ଆଠଦିନ ଅତିବାହିତ କରନ୍ତି। ଏହି ପରିଦର୍ଶନ ମଧ୍ୟ ପୁଙ୍ଖାନୁପୁଙ୍ଖ ରୂପେ ନୁହେଁ କେବଳ କାମଚଳା ଓ ଧାର୍ଯ୍ୟ ଗସ୍ତଦିନ (ବାଧ୍ୟତାମୂଳକ ହୋଇଥିବାରୁ) ପୂରଣ କରିବା ନିମନ୍ତେ ସଂପନ୍ନ ହୋଇଥାଏ । ପରିଦଶର୍ନ ସମୟରେ ସେ କେବଳ ଶ୍ରେଣୀ ପରିଦର୍ଶନ କରନ୍ତି । ପିଲାଙ୍କୁ ପ୍ରଶ୍ନ ପଚାରି

ଯାହା ଉତ୍ତର ପାଆନ୍ତି, ଲେଖନ୍ତି । ଆହୁରି ମଧ ଅନୁନିରୀକ୍ଷକ ଶିକ୍ଷକଙ୍କ ଶିକ୍ଷାଦାନ ଦେଖି ଶିକ୍ଷାଦାନରେ ରହିଥିବା ଦୋଷତ୍ରୁଟି ସୁଧାରିବା ପାଇଁ ଆବଶ୍ୟକ ଆଲୋଚନା କରନ୍ତି ନାହିଁ ବା ପରାମର୍ଶ ଦିଅନ୍ତି ନାହିଁ ବା ନିଜେ କୌଣସି ବିଷୟରେ ଆଦର୍ଶ ଶିକ୍ଷାଦାନ ଦିଅନ୍ତି ନାହିଁ । ଅନୁନିରୀକ୍ଷକଙ୍କର ପ୍ରାଥମିକ ବିଦ୍ୟାଳୟରେ ଶିକ୍ଷାଦାନ ନେଇ ମଧ ଅଭିଜ୍ଞାନ ନାହିଁ । ଏତଦ୍‌ବ୍ୟତୀତ ଅନୁନିରୀକ୍ଷକ ମାସର ହାରାହାରି ନଅଦିନ ପରିବାର କଲ୍ୟାଣ ଯୋଜନା, ସମନ୍ୱିତ ଗ୍ରାମ୍ୟ ଉନ୍ନୟନ କାର୍ଯ୍ୟକ୍ରମ, ଗ୍ରାମାଞ୍ଚଳର ଦରିଦ୍ରତମ ପରିବାରଙ୍କ ଅର୍ଥନୈତିକ ପୁନର୍ବସତି, ଆଦର୍ଶ ଗ୍ରାମପାଇଁ କାର୍ଯ୍ୟକ୍ରମ ଇତ୍ୟାଦିରେ ସମୟ ଅତିବାହିତ କରନ୍ତି । ଶିକ୍ଷା ବ୍ୟତୀତ ଅନ୍ୟାନ୍ୟ କାର୍ଯ୍ୟକ୍ରମରେ ନିଜକୁ ନିୟୋଜିତ କରି ଶିକ୍ଷା ଜଗତର ପରିବର୍ତ୍ତନ ସହ ସେମାନେ ଅଦୌ ସଂପର୍କ ରଖନ୍ତି ନାହିଁ । ଶିକ୍ଷା ଜଗତର ପରିବର୍ତ୍ତନରବାହକ ରୂପେ ସେମାନେ କାମ ନକରି ଦେଶର ଉନ୍ନୟନ କାର୍ଯ୍ୟକ୍ରମର ଚାହକରୂପେ କାର୍ଯ୍ୟ କରିଥାନ୍ତି ।

ମାଧମିକ ଶିକ୍ଷାସ୍ତରରେ ପରିଦର୍ଶନ କଥା ସମୀକ୍ଷା କଲେ ଜଣାଯାଏ ଯେ ବର୍ଷ ବର୍ଷ ଧରି ଉଚ୍ଚ ବିଦ୍ୟାଳୟ ଗୁଡ଼ିକର ପରିଦର୍ଶନ ହୁଏନାହିଁ । ଦେଖାଯାଇଛି ଗୋଟିଏ ଗୋଟିଏ ସ୍କୁଲ ୨୦/୩୦ ବର୍ଷଧରି ପରିଦର୍ଶିତ ହୋଇନାହିଁ । ମଣ୍ଡଳ ନିରୀକ୍ଷକଙ୍କ କାର୍ଯ୍ୟ ବୋଝ ଏତେ ଯେ ସେ ବିଦ୍ୟାଳୟ ପରିଦର୍ଶନ ପାଇଁ ସମୟ ପାଆନ୍ତି ନାହିଁ । ସେ ମହାଶୟଙ୍କ ଅଧିକାଂଶ ଦିନ ବିଭିନ୍ନ ସ୍ତରୀୟ ସଭାସମିତିରେ ଯୋଗଦେବାରେ ସମୟ ଅତିବାହିତ ହୁଏ । ଏତଦ୍‌ବ୍ୟତୀତ ବିଷୟ ବିଶାରଦ ବିନା ତାଙ୍କ ପକ୍ଷେ ସମସ୍ତ ବିଷୟ -ଶିକ୍ଷକଙ୍କ ଶ୍ରେଣୀ ପରିଦର୍ଶନ କରି ମତାମତ ବା ଉପଦେଶ ଦେବା ମଧ ସମ୍ଭବ ନୁହେଁ । ଅନ୍ୟ ପକ୍ଷରେ, ମାଧମିକ ଶିକ୍ଷାବୋର୍ଡ ମଧ ଶିକ୍ଷାର ମାନ ଉନ୍ନତି ପାଇଁ ବିଷୟ ବିଶାରଦଙ୍କ ଦ୍ୱାରା ଶ୍ରେଣୀ ପରିଦର୍ଶନ କରାଇବାର ବ୍ୟବସ୍ଥା କରନ୍ତି ନାହିଁ । ଯେଉଁ ସାମାନ୍ୟ କେତେଜଣ ବିଷୟ-ବିଶାରଦ ଅଛନ୍ତି, ସେମାନଙ୍କୁ ଏପରି ବିଭିନ୍ନ କାମରେ ନିଯୁକ୍ତ କରାଯାଉଛି ଯେ, ଶିକ୍ଷକଗଣ ସେମାନଙ୍କ ସହ ପରାମର୍ଶ କରିବାକୁ ସୁଯୋଗ ପାଆନ୍ତି ନାହିଁ ବା ସେମାନେ ମଧ ବିଦ୍ୟାଳୟକୁ ଆସିବା ପାଇଁ ଫୁରୁସତ୍ ପାଆନ୍ତି ନାହିଁ । ଏଇ ହେଲା ଆମର ଉଚ୍ଚ ବିଦ୍ୟାଳୟମାନଙ୍କର ପରିଦର୍ଶନ ବ୍ୟବସ୍ଥା ।

ପରିଦର୍ଶନର ଉନ୍ନତି ପାଇଁ ଆମେ କ'ଣ କରିପାରିବା ? :

ଶାସନକଳ, ଶିକ୍ଷା ବିଭାଗ ତଥା ଜନସାଧାରଣ ବର୍ତ୍ତମାନର ଶିକ୍ଷାର ସ୍ଥିତି ଓ ଗତି ସମ୍ବନ୍ଧରେ ସଂପୂର୍ଣ୍ଣ ଅନଭିଜ୍ଞ । ଶିକ୍ଷାର ମାନ ଉନ୍ନତି ପାଇଁ ପ୍ରତ୍ୟେକ ଚିନ୍ତାଶୀଳ ବ୍ୟକ୍ତି ମତାମତ ଦେବା ଏକାନ୍ତ କାମ୍ୟ । ମୁଁ ମୋ ନିଜ ମତାମତ ଏଠାରେ ଉପସ୍ଥାପନ କରୁଛି ସମସ୍ତଙ୍କ ବିଚାର ନିମନ୍ତେ ।

ମୋ ମତରେ ପରିଦର୍ଶନ ପାଇଁ ଶିକ୍ଷା ବିଭାଗରେ ଏକ ସ୍ୱତନ୍ତ୍ର ଅଙ୍ଗ (Cell) ରହୁ । ଉଚ୍ଚବିଦ୍ୟାଳୟ ପାଇଁ ମଣ୍ଡଳ ସ୍ତରରେ ବିଷୟ-ବିଶାରଦ ନିଯୁକ୍ତ କରାଯାଉ ଓ ପ୍ରାଥମିକ ବିଦ୍ୟାଳୟ ପାଇଁ (୧ମରୁ ୮ମ ପର୍ଯ୍ୟନ୍ତ) ଜିଲ୍ଲା ନିରୀକ୍ଷକ ସ୍ତରରେ ଶିଶୁମନୋବିଜ୍ଞାନୀ, ପ୍ରାଥମିକ ବିଦ୍ୟାଳୟ ସ୍ତରର ଉଚ୍ଚ

ଯୋଗ୍ୟତାସଂପନ୍ନ ଅଭିଜ୍ଞ ଶିକ୍ଷକ ଓ ଜଣେ ଶାରୀରିକ ଶିକ୍ଷା (P.E.T.) ଶିକ୍ଷକ ନେଇ ଏକ ପରିଦର୍ଶନମଣ୍ଡଳୀ ଗଠନ କରାଯାଉ । ମଣ୍ଡଳ ସ୍ତରୀୟ ବିଷୟ-ବିଶାରଦ ଗଣ ବର୍ଷରେ ଅନ୍ତତଃ ଥରେ ପ୍ରତି ଉଚ୍ଚ ବିଦ୍ୟାଳୟକୁ ପରିଦର୍ଶନ କରି ବିଷୟ-ଶିକ୍ଷକଙ୍କୁ ସୁଚିନ୍ତିତ ପରାମର୍ଶ ଦେବେ ଓ ଜିଲ୍ଲାସ୍ତରୀୟ ପରିଦର୍ଶକ ମଣ୍ଡଳୀ ଜିଲ୍ଲା ନିରୀକ୍ଷକ ଓ ଅନୁନିରୀକ୍ଷକଙ୍କ ସହ ସୁସଂପର୍କ ସ୍ଥାପନ କରି ପରିଦର୍ଶନର ଉନ୍ନତି ପାଇଁ ଆବଶ୍ୟକୀୟ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବେ । ସେମାନେ କେନ୍ଦ୍ର, ରାଜ୍ୟସ୍ତରୀୟ ଆଲୋଚନା ଚକ୍ରମାନଙ୍କରେ ନିୟମିତ ଯୋଗଦେଇ ଶିକ୍ଷାଜଗତର ନୂତନ ପରିବର୍ତ୍ତନ ସହ ସଂପର୍କ ରଖି ପରିବର୍ତ୍ତନର ବାର୍ତ୍ତାବହ ରୂପେ କାମ କରିବେ ଓ ପ୍ରାଥମିକ ବିଦ୍ୟାଳୟର ଶିକ୍ଷକଙ୍କୁ ଶିକ୍ଷାର ମାନବୃଦ୍ଧି ପାଇଁ ପରାମର୍ଶ ଦେବେ । ମଣ୍ଡଳ ଓ ଜିଲ୍ଲା ଉଭୟ ସ୍ତରରେ ଦୁଇପ୍ରକାର ଗୋଷ୍ଠୀ ପରିଦର୍ଶକ ଅନବରତ କାର୍ଯ୍ୟ କରିବେ । ଉଭୟ ସ୍ତରର ପରିଦର୍ଶକଙ୍କୁ ସେମାନଙ୍କ ବାହିଦା ଅନୁଯାୟୀ ଥରକୁ ଥର ବୃତ୍ତିଗତ ତାଲିମର (Inservice Training)ବ୍ୟବସ୍ଥା ରହିବ ।

ନିଯୁକ୍ତି କ୍ଷେତ୍ରରେ ପ୍ରାଥମିକ ବିଦ୍ୟାଳୟ ପରିଦର୍ଶନ ପାଇଁ କେବଳ ପ୍ରାଥମିକ ବିଦ୍ୟାଳୟର ଉପଯୁକ୍ତ ଯୋଗ୍ୟତାପ୍ରାପ୍ତ ଅଭିଜ୍ଞ ଶିକ୍ଷକ ମାନଙ୍କୁ ନିଯୁକ୍ତ କରାଯାଉ । ପ୍ରତ୍ୟେକ ସ୍ତରର ପରିଦର୍ଶକଙ୍କ ନିଯୁକ୍ତି ପାଇଁ ପ୍ରତିଯୋଗିତାମୂଳକ ପରୀକ୍ଷା କରାଯାଉ । ଏହି ପ୍ରତିଯୋଗିତାରେ ଯୋଗଦେବା ପାଇଁ ସର୍ବନିମ୍ନ କେତେବର୍ଷର ଅଭିଜ୍ଞତା ତଥା ଶିକ୍ଷାଗତ ଯୋଗ୍ୟତା ଶିକ୍ଷକଙ୍କ ଥିବା ଆବଶ୍ୟକ, ତାହା ନିର୍ଦ୍ଧାରଣ କରାଯିବ । କେବଳ ଚାକିରି ଉପରେ ପଦୋନ୍ନତି ଦେଲେ ଅଯୋଗ୍ୟ ବ୍ୟକ୍ତି ପରିଦର୍ଶକ ରୂପେ ନିଯୁକ୍ତି ପାଇବା ସ୍ୱାଭାବିକ, ଫଳରେ ଶିକ୍ଷାର ମାନ ହ୍ରାସ ହେବା ସୁନିଶ୍ଚିତ ।

ଉଚ୍ଚ ବିଦ୍ୟାଳୟର ଖେଳ ଶିକ୍ଷକ, ବୈଷୟିକ (Technical) ଶିକ୍ଷକଙ୍କ ସମୟ ଅନେକ । ସେମାନେ ଅନ୍ତତଃ ନିକଟସ୍ଥ ପ୍ରାଥମିକ ବିଦ୍ୟାଳୟକୁ ସପ୍ତାହରେ ଥରେ ଯାଇ ଖେଳ ଓ ବୈଷୟିକ ବିଦ୍ୟା ଉପରେ ଶିକ୍ଷା ଦେବେ । ଏପରିକି ବିଜ୍ଞାନ ଶିକ୍ଷକ ମଧ ପରିଦର୍ଶକ ରୂପେ ନିକଟସ୍ଥ ପ୍ରାଥମିକ ବିଦ୍ୟାଳୟକୁ ଯିବେ । ଅନୁନିରୀକ୍ଷକଙ୍କ ସ୍ତରରେ କେତେଜଣ ଶିକ୍ଷକ ରହିବେ, ଯେଉଁମାନେ ସପ୍ତାହରେ ଦୁଇଦିନ ବିଦ୍ୟାଳୟକୁ ଯିବେ ଓ ପାଠ ଜଣେ ପଢ଼ାଇବେ । ବିଦ୍ୟାଳୟର ପ୍ରଧାନ ଶିକ୍ଷକ ଉକ୍ତଦିନରେ ମାନଙ୍କରେ ଅଫିସ କାମ କରିବେ ଓ ମଧ୍ୟାହ୍ନ ଭୋଜନର ବ୍ୟବସ୍ଥା ବୁଝିବେ । ଏହା ଫଳରେ ଶ୍ରେଣୀ କାର୍ଯ୍ୟରେ କୌଣସି ବାଧା ସୃଷ୍ଟି ହେବନାହିଁ । ଏ ଧରଣର ବ୍ୟବସ୍ଥା ପାଶ୍ଚାତ୍ୟ ଦେଶ ବିଶେଷତଃ ସ୍କଟଲାଣ୍ଡରେ ଅଛି । ସେଠାରେ ସ୍ଥାନୀୟ ଜନସାଧାରଣ ମଧ ବିଦ୍ୟାଳୟ ସହ ଓତପ୍ରୋତ ଭାବେ ଜଡ଼ିତ । ବିଭିନ୍ନ କ୍ଷେତ୍ରରେ କୃତିତ୍ୱ ଅର୍ଜନ କରିଥିବା ବ୍ୟକ୍ତି ମଧ ପ୍ରାଥମିକ ବିଦ୍ୟାଳୟକୁ ଆସି ପିଲାମାନଙ୍କୁ ଶିକ୍ଷା ଦିଅନ୍ତି । ଏତଦ୍‌ବ୍ୟତୀ ନିରକ୍ଷର ପୌଢ଼ ବ୍ୟକ୍ତିମାନେ ଦରମା ଦେଇ ଛୋଟପିଲାଙ୍କ ସହ ବିଦ୍ୟାଳୟରେ ପଢ଼ନ୍ତି । ଏଣୁ ନିରକ୍ଷରତା ଦୂରୀକରଣ ପାଇଁ ବିଦ୍ୟାଳୟଗୁଡ଼ିକ ବିଶେଷ ସହାୟକ ହେଉଛି ।

## ଉପସଂହାର :

ଆମେ ଆଶାକରୁ ଜାତୀୟ ସରକାରଙ୍କ ଶିକ୍ଷାନୀତି ବିଦ୍ୟାଳୟର ଅନେକ ଅଭାବ ଅସୁବିଧା ଦୂରକରିବାରେ ସମର୍ଥ ହେବେ। 'ଅପରେସନ୍ ବ୍ଲାକ୍‌ବୋର୍ଡ' ଯୋଜନା ଦ୍ୱାରା ପ୍ରାଥମିକ ବିଦ୍ୟାଳୟ ଗୁଡ଼ିକର ଅଭାବ (Physical difficulty)ପୂରଣ ହେବ। ଏଣୁ କ'ଣ କଲେ ଶିକ୍ଷାର ମାନବୃଦ୍ଧି ହେବ, ଏହାହିଁ ଆମର ଅନୁଚିନ୍ତାର ବିଷୟ। ପ୍ରତ୍ୟେକ ଗ୍ରାମପଞ୍ଚାୟତର ସଦର ମହକୁମା ପ୍ରାଥମିକ ବିଦ୍ୟାଳୟକୁ ଗ୍ରାମପଞ୍ଚାୟତ ଅଞ୍ଚଳରେ ଅବସ୍ଥିତ ପ୍ରାଥମିକ ବିଦ୍ୟାଳୟମାନଙ୍କର କେନ୍ଦ୍ର ବିଦ୍ୟାଳୟ କରି ପୂର୍ବ ପ୍ରଚଳିତ ନିୟମ ଅନୁଯାୟୀ ପ୍ରଧାନ ଶିକ୍ଷକଙ୍କୁ ପରିଦର୍ଶନ ଭାର ଦେଲେ ପରିଦର୍ଶନ କାର୍ଯ୍ୟକ୍ରମ ଆହୁରି ଗହନ (Intensive) ହୋଇପାରନ୍ତା। ଏ ସମସ୍ତ ବ୍ୟବସ୍ଥା ଦ୍ୱାରା ଶିକ୍ଷାଦାନର ଦକ୍ଷତା ବଢ଼ିବା ସଂଗେ ସଂଗେ ଶିକ୍ଷକଙ୍କ ବିଦ୍ୟାଳୟରେ ଅନୁପସ୍ଥିତ ହେବା (Absenteeism) ମନୋବୃତ୍ତି ଦୂର ହୁଅନ୍ତା। ଅପର ପକ୍ଷରେ, ବାରମ୍ବାର ପରିଦର୍ଶନ ଫଳରେ ଦୈନନ୍ଦିନ ଜ୍ଞାନରାଜ୍ୟରେ ଯେଉଁ ବିସ୍ଫୋରଣ ହେଉଛି ସେହି ସମ୍ବାଦମାନ (Information) ପାଇପାରିବେ। ଏତଦ୍‌ବ୍ୟତୀତ ଗୋଟିଏ କଥା ଦେଖାଯାଉଛି ଯେ ବିଦ୍ୟାଳୟଗୁଡ଼ିକ ସ୍ଥାନୀୟ ଜନସହଯୋଗରୁ ଦିନକୁ ଦିନ ଦୂରେଇ ଯାଉଛି। ସ୍ଥାନୀୟ ଜନସାଧାରଣ ପ୍ରାକ୍-ସ୍ୱାଧୀନତା କାଳରେ ବିଦ୍ୟାଳୟର ଅଭାବ ପୂରଣ ଦିଗରେ ସ୍ୱ-ଇଚ୍ଛାକ୍ରମେ ଯେପରି ଆଗେଇ ଆସୁଥିଲେ ଓ ବିଦ୍ୟାଳୟକୁ ନିଜ ଗ୍ରାମର ଏକ ଅଂଗ ତଥା ଗ୍ରାମର ଶିକ୍ଷା ଓ ସଂସ୍କୃତିର କେନ୍ଦ୍ର ବୋଲି ବିଚାରୁଥିଲେ, ତାହା ଆଉ ନାହିଁ। କାରଣ ଆମେ ସେମାନଙ୍କଠାରୁ ଦୂରେଇ ଯିବାକୁ ଚାହୁଁଛୁ। ଫଳରେ ଜନସାଧାରଣଙ୍କ ସହଯୋଗ ହରାଇବା ସଂଗେ ସଂଗେ ବିଦ୍ୟାଳୟ ପାଇଁ ସରକାରଙ୍କ ରାଜକୋଷ ଉପରେ ଖର୍ଚ୍ଚଭାର ଅଧିକରୁ ଅଧିକତର ପଡୁଛି। ଆସନ୍ତୁ ଶିକ୍ଷା କ୍ଷେତ୍ରରେ ପରିଦର୍ଶନର ଭୂମିକାକୁ ସୁଦୃଢ଼ କରି ଶିକ୍ଷକ ଓ ସମାଜର ସହଯୋଗରେ ଦେଶର ଶିକ୍ଷା ମାନ ଅଭିବୃଦ୍ଧି ପାଇଁ ଆଗଭର ହେବା।

୮

## କେବଳ କ'ଣ ପୁରୁଷକୁ ନେଇ ଏ ସମାଜ :

ଆଦି ସ୍ରଷ୍ଟା ଆଦାମ୍ ଓ ଇଭ୍‌ଙ୍କ ସମୟରୁ ପୁରୁଷ ଓ ସ୍ତ୍ରୀ ସମନ୍ୱୟକୁ ନେଇ ଏକ ସମାଜ ବୋଲି କୁହାଯାଏ। କିନ୍ତୁ ପୁରୁଷ ସବୁବେଳେ ନାରୀକୁ ଦୁର୍ବଳା ବୋଲି ଆଖ୍ୟା ଦେଇ ନିଜ ବାହୁ ଛାୟା ତଳେ ରଖି ତା'ଉପରେ ରାଜୁତି କରି ଆସିଛି। ପ୍ରାଚୀନ ସଂସ୍କୃତ ସାହିତ୍ୟରେ ନାରୀ ପ୍ରତି ଆକ୍ଷେପ କରି ଲେଖାଯାଇଛି ଯେ - "ବିନାଶ୍ରୟେ ନ ବର୍ତନ୍ତେ କବିତା, ବନିତା, ଲତା।" ଝିଅଟିଏ ଜନ୍ମହେଲେ ବାପା ମା' ତଥା ପରିବାରର ଅନ୍ୟମାନଙ୍କ ମନରେ ଭାରି ଦୁଃଖ। ସତେ ଯେପରି ପୁଅଟିଏ ହୋଇଥିଲେ ସେମାନଙ୍କୁ ସ୍ୱଦେହରେ ସ୍ୱର୍ଗକୁ ନେଇଥାନ୍ତା। ବ୍ୟାସକବି ଫକୀର ମୋହନଙ୍କ 'ରେବତୀ' ତତ୍‌କାଳୀନ ସମାଜରେ ଝିଅପ୍ରତି ମନୋଭାବର ନିଛକ ପ୍ରତିଫଳନ। 'ଝିଅ ଜନମ ପର ଘରକୁ' - ଏଇ କଥାର ଜବାବ ବାପା ମା ପାଆନ୍ତି ବୁଢ଼ା ବୟସରେ, ଶେଷ ଜୀବନରେ ଯେତେବେଳେ ପୁଅ ନିଜେ ସମାଜରେ

ପ୍ରତିଷ୍ଠିତ ହେବା ପରେ ବାପା ଓ ମାଆଙ୍କ ଠାରୁ ଦୂରେଇ ଯାଏ । ଗେଲ ବସରର ପୁଅ ଯାହାକୁ ସେମାନେ ନିଜ ଜୀବନଠାରୁ ଅଧିକ ଭଲ ପାଉଥିଲେ, ପୁଅ ନ ଖାଇଲେ ମା'କୁ ଭୋକ ହେଉ ନଥିଲା ଓ ପୁଅ ନ ଶୋଇଲେ ବାପା ମା'କୁ ନିଦ ହେଉ ନଥିଲା, ସେ ସେମାନଙ୍କୁ ବୁଢ଼ା ବୟସରେ ଯେତେବେଳେ ପରିବାରର ଅଦରକାରୀ (Appendix) ବୋଲି ମନେକରେ, ସେତେବେଳେ ସେମାନେ ମନେପକାନ୍ତି ଝିଅର କଥା । ବ୍ୟାସକବିଙ୍କ 'ଡାକମୁନ୍‌ସୀ'ରେ ଗୋପାଳବାବୁଙ୍କ କଥା ପାଠକେ ନିଶ୍ଚୟ ମନେ ପକାଇବେ ।

ଯେ ଆଜି ଆମ ଘରର ଝିଅ, ସେ କାଲିକି ଅନ୍ୟଘରର ବୋହୂ । ତା' ଉପରେ ନିର୍ଭର କରେ ଦେଶର ବିରାଟ ଭବିଷ୍ୟତ । ସେ ଗଢ଼େ ଭବିଷ୍ୟତ ବଂଶଧରକୁ ଯେଉଁମାନେ କି ଦେଶର ନାଗରିକ ହୋଇ ଭବିଷ୍ୟତରେ ଦେଶର କର୍ଣ୍ଣଧାର ହେବେ। ସେ ଭବିଷ୍ୟତ ବଂଶଧରକୁ ଯେପରି ରୂପ ଦେବ, ସେପରି ମଣିଷ ବାହାରିବେ। ଜର୍ମାନ ଜାତି ପୃଥିବୀ ସମକ୍ଷରେ ଏକ ବୀର ଜାତି ହୋଇ ଗଢ଼ିଉଠିବା ତଥା କଳା ବିଜ୍ଞାନ, ଶିଳ୍ପ, ବାଣିଜ୍ୟ କ୍ଷେତ୍ରରେ ସର୍ବୋତ୍କୃଷ୍ଟ ସ୍ଥାନ ଲାଭ କରିବା ପଛରେ ମାତୃଜାତିର ଅବଦାନ ରହିଛି । ସେଥିପାଇଁ ସେ ଜାତି ସବୁବେଳେ ମାତୃଜାତିକୁ ସମ୍ମାନ ଦେଇ ଆସିଛି । ପରିବାରରେ ପୁରୁଷ ଅପେକ୍ଷା ସ୍ତ୍ରୀର ଅବଦାନ ଯଥେଷ୍ଟ । ତାକୁ ବିଭିନ୍ନ ଦାୟିତ୍ୱ ତୁଲେଇବା ପାଇଁ ବିଭିନ୍ନ ରୂପ ନେବାକୁ ପଡ଼େ । ସେ ହେବ ସମଧର୍ମିଣୀ, ପୁରୁଷର ସୁଖ ଦୁଃଖାଦିରେ ଅଂଶୀଦାର । ସୁଗୃହିଣୀ ଭାବେ ସେ ଘରର ଭଲମନ୍ଦ, ଅଭାବ ଅସୁବିଧା ସବୁ ବୁଝିବ । ଆଦରଣୀୟା ବୋହୂ ହେବାପାଇଁ ଶାଶୁ, ଶ୍ୱଶୁର, ଦେବର, ନଣନ୍ଦଙ୍କ ମନଜାଣି କାମ କରିବ । ଏତଦ୍‌ବ୍ୟତୀତ ତାକୁ ଉପଯୁକ୍ତ ମା' ହେବାକୁ ପଡ଼ିବ । ଏହା ତା'ର ସବୁଠାରୁ ଗୁରୁ ଦାୟିତ୍ୱ । ଏହି ଦାୟିତ୍ୱରେ ଅବହେଳା କଲେ ପରିବାର ଉଜୁଡ଼ି ଯିବା ସଂଗେ ସଂଗେ ଦେଶର ଭବିଷ୍ୟତ ଉଜୁଡ଼ି ଯିବ । ସମାଜର ଏପରି ଦାୟିତ୍ୱ ସଂପନ୍ନ ଏକ ଅଂଶୀଦାରକୁ ଆମେ ନିରକ୍ଷରା ଓ ଅବହେଳା କଲେ ସମାଜ ଓ ଦେଶର ଅବସ୍ଥା କ'ଣ ହେବ ସହଜେ ଅନୁମେୟ ।

ପୁରୁଷର ସମକକ୍ଷ ହେବା ପାଇଁ ତା'ର ସାମର୍ଥ୍ୟ ଥିଲେ ବି ସେ ସମାଜରେ ସୁଯୋଗ ପାଏ କି ? ସେ ପରିବାରର ସମସ୍ତ ସୁଖ ଦୁଃଖ ବୁଝିବ, କିନ୍ତୁ ତା'ପ୍ରତି ସମସ୍ତଙ୍କର ବେଖାତିର ମନୋଭାବ । କେବଳ ସେତିକି ନୁହେଁ, ସମସ୍ତଙ୍କ ମନଜାଣି ଓ ସେମାନଙ୍କୁ ଖୁସି କରାଇବା ଭଳି ଖାଦ୍ୟପେୟ ପ୍ରସ୍ତୁତ କରିବ ଓ ଖୁଆଇବ । କିନ୍ତୁ ସେ ଖାଇବ ଯଦି କିଛି ବଳକା ରହେ କିମ୍ବା ବାସିଖାଦ୍ୟ । ଏଣୁ ଯୁଗ ଯୁଗ ଧରି ପୁରୁଷ ଜାତି ସେମାନଙ୍କୁ କିପରି ଅବଜ୍ଞା କରି ଆସିଛି ପାଠକେ ବିଚାର କରନ୍ତୁ । ପତ୍ରପତ୍ରିକାରେ ପ୍ରତ୍ୟହ 'ବଧୂ ନିର୍ଯାତନା' ଯୌତୁକ ପାଇଁ ହତ୍ୟା ଇତ୍ୟାଦି ସମ୍ବାଦ ଦେଖିବାକୁ ମିଳେ । ସତେ ଯେପରି ସେ ଏକ ପଣ୍ୟ ଦ୍ରବ୍ୟ ! ଖୋଲା ବଜାରରେ ତା'ର କିଣାବିକା ଚାଲିଛି । ସମାଜ ଏପରି ଅବସ୍ଥା ସୃଷ୍ଟି କରୁଛି ଯେ ବାପ, ମା' ସେମାନଙ୍କ ଆଦରଣୀୟା ଝିଅ ପ୍ରତି ବିମୁଖ ମନୋଭାବ ପୋଷଣ କରୁଛନ୍ତି । ପିତାମାତାଙ୍କ ଆର୍ଥିକ ଦୁରବସ୍ଥା ଯୋଗୁଁ ଝିଅ ଅବିବାହିତ ହୋଇ ରହିଯାଉଛି । ନିକଟ ଅତୀତରେ କାନପୁରର ଜଘନ୍ୟ

ଆତ୍ମହତ୍ୟା ଏହାର ଜ୍ୱଳନ୍ତ ଉଦାହରଣ ।

କିନ୍ତୁ ସ୍ୱତଃ ଏକ ପ୍ରଶ୍ନ ଉଠେ, ପୁରୁଷ ସ୍ତ୍ରୀଠାରୁ କେଉଁ ଗୁଣରେ ଉତ୍କୃଷ୍ଟ ? ଆପଣମାନେ ବିଶ୍ୱବିଦ୍ୟାଳୟ ଗୁଡ଼ିକର ପରୀକ୍ଷା ଫଳ ଦେଖନ୍ତୁ । ପ୍ରଥମ ଦଶଜଣଙ୍କ ମଧ୍ୟରୁ ଝିଅଙ୍କ ସଂଖ୍ୟା ଛଅ, ସାତ ବା ତହିଁରୁ ଅଧିକ । ସେମାନଙ୍କୁ ଯେ କୌଣସି ଦାୟିତ୍ୱପୂର୍ଣ୍ଣ କାମ ଦିଆଯାଉ, ସେମାନେ ପୁରୁଷ ଅପେକ୍ଷା ଅଧିକ ସୁଚାରୁ ରୂପେ ତୁଲାଇବେ । କଳା, ବିଜ୍ଞାନ, ସାଧାରଣ ଶାସନ, ବିଚାର ବିଭାଗୀୟ କାର୍ଯ୍ୟ ତଥା ଦେଶରକ୍ଷା ଦିଗରେ ନାରୀଜାତିର କୃତିତ୍ୱ କମ୍ ନୁହେଁ । ଶ୍ୱଶୁରାଳୟର ପ୍ରତିକୂଳ ପରିବେଶରୁ ବାହାରି ଆସି ଅମୃତାପ୍ରୀତମ୍ ସାହିତ୍ୟ ଜଗତରେ ଆଲୋଡ଼ନ ସୃଷ୍ଟି କରିଛନ୍ତି । ଶାସନ କ୍ଷେତ୍ରରେ ପାରଦର୍ଶିତା ଲାଭ କରିଥିବା କିରଣ ବେଦୀ ଆଇ.ପି.ଏସ୍‌ଙ୍କୁ ବା ନ ଜାଣିଛି କିଏ ? ସମାଜ ପ୍ରତି କ୍ଷୁବ୍ଧ ହୋଇ ନାରୀ ଯେତେବେଳେ ଭୈରବୀ ରୂପ ଧାରଣ କରିଛି ସେ ସମାଜକୁ ଅସ୍ତବ୍ୟସ୍ତ କରି ପକାଇଛି । ପାଠକ ଗଣ ମନେ ପକାନ୍ତୁ ଦସ୍ୟୁରାଣୀ ଫୁଲନଦେବୀଙ୍କ କଥା ।

## ନାରୀଜାତି ଅବହେଳିତ କାହିଁକି ? :

ତେବେ ସମାଜରେ ଗୁରୁତ୍ୱପୂର୍ଣ୍ଣ ଭୂମିକାରେ ଏକ ଅଂଶୀଦାରକୁ ଅନ୍ୟ ଏକ ଅଂଶୀଦାର ଅବହେଳା କରୁଛି କାହିଁକି ? ପ୍ରତିଯୋଗିତାରେ ନିଜଠାରୁ ଟପିଯିବା ଭୟରେ ନା ନିଜ ସୁଖ ସଂଭୋଗରେ ବାଧାପ୍ରାପ୍ତ ହେବା ଆଶଙ୍କାରେ ! ନାରୀକୁ ଓଢ଼ଣା ତଳେ ରଖି ବିଭିନ୍ନ ଅଳଂକାର ଦ୍ୱାରା ଭୂଷିତ କରି ତା'ର ଗତିବିଧିକୁ ନିୟନ୍ତ୍ରଣ କଲେ ବି ତା'ର ଜନ୍ମଗତ ଗୁଣ ନିଶ୍ଚୟ ପରିପ୍ରକାଶ ହେବ । ତେବେ ସେପରି ଏକ ମୂଲ୍ୟବାନ ଜାତୀୟ ସଂପଦର ଉପଯୁକ୍ତ ବିନିଯୋଗ କରି ଆମେ ଶିକ୍ଷା, ସଂସ୍କୃତି, କଳା ଓ ବିଜ୍ଞାନ କ୍ଷେତ୍ରରେ ନାରୀ ଜାତିକୁ ସ୍ୱାବଲମ୍ବୀ କରିବା ବ୍ୟବସ୍ଥା କଲେ ସମାଜରେ ବର୍ତ୍ତମାନ ଘଟୁଥିବା ସମସ୍ତ ବୀଭତ୍ସ କାଣ୍ଡ ସ୍ୱତଃ ଦୂରେଇ ଯିବ । ବିଶ୍ୱବିଖ୍ୟାତ ଅର୍ଥନୀତିଜ୍ଞ କାର୍ଲମାର୍କ୍ସଙ୍କ ଭାଷାରେ 'ଅର୍ଥ ହିଁ ସମସ୍ତ ପ୍ରକ୍ରିୟାର କେନ୍ଦ୍ରବିନ୍ଦୁ ।'

ଅର୍ଥନୈତିକ କ୍ଷେତ୍ରରେ ନାରୀମାନଙ୍କୁ ସ୍ୱାବଲମ୍ବୀ କରିବା ପାଇଁ ଅନୁକୂଳ ବାତାବରଣ ସୃଷ୍ଟି କରିବା ଜାତୀୟ ସରକାରଙ୍କ ସର୍ବପ୍ରଥମ କର୍ତ୍ତବ୍ୟ । ଶିକ୍ଷା ବିନା ସେମାନେ କୌଣସି ପ୍ରକାର ସମ୍ମାନଜନକ କାର୍ଯ୍ୟକରି ଉପାର୍ଜନକ୍ଷମ ହୋଇପାରିବେ ନାହିଁ । ୧୯୮୧ ଜନଗଣନାରୁ ଜଣାଯାଏ ଯେ ଶତକଡ଼ା ୨୪.୮୨ ଜଣ ସ୍ତ୍ରୀ ଲୋକ ସାକ୍ଷର ଅର୍ଥାତ୍ ସେମାନଙ୍କ ମଧ୍ୟରୁ ହାରାହାରି ଶତକଡ଼ା ୭୫ ଜଣ ନିରକ୍ଷର । ୧୯୭୧ ଜନଗଣନା ତୁଳନାରେ ସ୍ତ୍ରୀ ନିରକ୍ଷରତା ୨୧.୯ ନିୟୁତକୁ ବୃଦ୍ଧି ପାଇଛି । ନାରୀ ସାକ୍ଷରତା ହ୍ରାସ ପାଉଥିବା କାରଣ ଅନୁସନ୍ଧାନ କଲେ ଜଣାଯାଏ ଯେ ବାପା, ମା, ଝିଅର ଶିକ୍ଷାପ୍ରତି ପ୍ରତିକୂଳ ମନୋଭାବ ପୋଷଣ କରି ସେମାନଙ୍କୁ ଗୃହକାର୍ଯ୍ୟରେ ନିୟୋଜିତ କରୁଛନ୍ତି । ଦ୍ୱିତୀୟତଃ, ଗୃହଠାରୁ ବିଦ୍ୟାଳୟର ଦୂରତା ସେମାନଙ୍କ ଶିକ୍ଷାରେ ପ୍ରତିବନ୍ଧକ ସୃଷ୍ଟି କରୁଛି । ତୃତୀୟତ, ଶିକ୍ଷୟତ୍ରୀ ନଥିବା

ବିଦ୍ୟାଳୟରେ ଝିଅଙ୍କୁ ପଢ଼ାଇବାକୁ ବାପ, ମା, ନିରାପଦ ମଣୁ ନାହାନ୍ତି । ଚତୁର୍ଥତଃ ପୁରୁଷମାନଙ୍କ ନାରୀଶିକ୍ଷା ପ୍ରତି ବୀତସ୍ପୃହ ମନୋଭାବ । ଅଧିକ ଝିଅଙ୍କୁ ବିଦ୍ୟାଳୟକୁ ଆଣିବା ଲକ୍ଷ୍ୟରେ ଜାତୀୟ ସରକାର ସେମାନଙ୍କ ଶିକ୍ଷା କ୍ଷେତ୍ରରେ ସୃଷ୍ଟି ହେଉଥିବା ବିଘ୍ନଗୁଡ଼ିକ ଦୂର କରିବା ନିମନ୍ତେ ବିଭିନ୍ନ କାର୍ଯ୍ୟକ୍ରମ ପ୍ରସ୍ତୁତ କରନ୍ତୁ ।

## ସ୍ୱାଧୀନତା ପରେ ଦେଶରେ ନାରୀମାନଙ୍କ ପାଇଁ ଶିକ୍ଷା ବ୍ୟବସ୍ଥା :

୧୯୫୦-୫୧ ମସିହାରେ ଦେଶରେ ବତଷଠି ଲକ୍ଷ ଝିଅ ପାଠ ପଢୁଥିଲେ ଓ ସେମାନଙ୍କ ସଂଖ୍ୟା ବର୍ଷକୁ ଶତକଡ଼ା ତିନି ହିସାବରେ ବଢ଼ିଛି । ବିଶ୍ୱବିଦ୍ୟାଳୟ ଓ ବୃତ୍ତିଗତ ଶିକ୍ଷାରେ ଝିଅମାନଙ୍କ ନାମଲେଖା ଯେତିକି ବଢ଼ିଛି ପ୍ରାଥମିକ ବା ମାଧ୍ୟମିକ ସ୍ତରରେ ସେତିକି ନୁହେଁ । ଏଥିରୁ ଅନୁମିତ ହୁଏ ଯେ ନାରୀଶିକ୍ଷା ସହରାଞ୍ଚଳ ତଥା ଉଚ୍ଚ ଓ ମଧ୍ୟବିତ୍ତ ଶ୍ରେଣୀ ମଧ୍ୟରେ ସୀମିତ ହୋଇ ରହିଯାଇଛି । ଦୁର୍ଗାଭାଇ କମିଶନ (୧୯୫୮), ଭକ୍ତବତ୍ସଲମ୍ କମିଟୀ (୧୯୬୫) ଓ ହଂସ ମେହେଟ୍ଟା କମିଟୀ ନାରୀ ସାକ୍ଷରତା ଉପରେ ବିଶେଷ ଗୁରୁତ୍ୱ ଦେଇଛନ୍ତି । ଜାତୀୟ ତଥା ରାଜ୍ୟ ନାରୀଶିକ୍ଷା ପରିଷଦ ମାନଙ୍କ ଉଦ୍ୟମ ଫଳରେ ନାରୀ ସାକ୍ଷରତା ୧୯୫୧ ଓ ୧୯୮୧ ମଧ୍ୟରେ ଶତକଡ଼ା ୭.୯ ରୁ ଶତକଡ଼ା ୧୪.୮୮ କୁ ବୃଦ୍ଧି ପାଇଛି । କିନ୍ତୁ ସେହି ସମୟ ମଧ୍ୟରେ ପୁରୁଷ ସାକ୍ଷରତା ୪୬.୭୪ ତୁଳନାରେ ଅତି ନିମ୍ନ । ଆନ୍ତର୍ଜାତିକ ନାରୀବର୍ଷ ୧୯୭୫ ଠାରୁ ନାରୀମାନଙ୍କୁ ରାଜନୈତିକ, ଆର୍ଥିକ ତଥା ଉନ୍ନୟନ କାର୍ଯ୍ୟରେ ସକ୍ରିୟ ଅଂଶ ପ୍ରଦାନ କରିବାକୁ ଏକ ଅଭିଯାନ ଚାଲିଛି । ଏହା ନିଃସନ୍ଦେହ ଯେ ଶିକ୍ଷା କ୍ଷେତ୍ରରେ ଅନେକ ଅଭିବୃଦ୍ଧି ଘଟିଛି କିନ୍ତୁ ସମସ୍ତଙ୍କ ପାଇଁ ଶିକ୍ଷାର ବ୍ୟବସ୍ଥା ଆମେ ଏପର୍ଯ୍ୟନ୍ତ କରି ପାରିନାହୁଁ । ଶିକ୍ଷାଦ୍ୱାରା ଆମେ କୃଷି ଓ ଶିଳ୍ପର ଆଧୁନିକୀକରଣ କରିପାରିଛୁ ଓ ସହରାଞ୍ଚଳରେ ଜନସାଧାରଣଙ୍କ ଜୀବନଧାରଣ 'ମାନ'ର ଅଭିବୃଦ୍ଧି ଘଟିଛି କିନ୍ତୁ ଗ୍ରାମାଞ୍ଚଳରେ ନୁହେଁ । ଶିକ୍ଷାର ଏ ପର୍ଯ୍ୟନ୍ତ କର୍ମସଂସ୍ଥାନ ବା ଉତ୍ପାଦନ ସହ ସଂପର୍କ ନାହିଁ ।

## ନାରୀଶିକ୍ଷା ତଥା ତା'ର ସୃଜନଶୀଳତାର ଅଭିବୃଦ୍ଧି ପାଇଁ ପଦକ୍ଷେପ :

ପ୍ରଥମତଃ, ଅଜ୍ଞ ପିତାମାତାଙ୍କୁ ନିଜ ଝିଅର ଶିକ୍ଷାପାଇଁ ପ୍ରେରଣା ଦେବାକୁ ହେବ । ଝିଅମାନଙ୍କୁ ପଢ଼ାଇବା ନିମନ୍ତେ ଆକାଶବାଣୀ ଓ ଦୂରଦର୍ଶନ ଜରିଆରେ ବିଭିନ୍ନ କାର୍ଯ୍ୟକ୍ରମ ପ୍ରସ୍ତୁତ କରି ପିତାମାତାଙ୍କୁ ସେ ଦିଗରେ ଉଦ୍‌ବୁଦ୍ଧ କରିବାକୁ ହେବ । ଏତଦ୍‌ବ୍ୟତୀତ, ଶିକ୍ଷୟିତ୍ରୀ ଓ ସ୍ୱେଚ୍ଛାସେବିକାମାନେ ଘରକୁ ଘର ଯାଇ ଦେଶରେ ନାରୀ ଶିକ୍ଷାପାଇଁ ହେଉଥିବା ବିଭିନ୍ନ ଯୋଜନା ସମ୍ବନ୍ଧରେ ଅଭିଭାବକମାନଙ୍କୁ ବୁଝାଇବେ । ସ୍ତ୍ରୀ ଲୋକଙ୍କ ପାଇଁ ଉପଯୁକ୍ତ ଆୟକାରୀ ବୃତ୍ତିର ବିଭିନ୍ନ ବ୍ୟବସ୍ଥା ସରକାରଙ୍କ ତରଫରୁ ହେବା ଉଚିତ ଓ ସେଥିପାଇଁ ଉପଯୁକ୍ତ ତାଲିମର ବ୍ୟବସ୍ଥା ରଖିବା ଦରକାର । ସୃଜନଶୀଳା ନାରୀମାନଙ୍କୁ ସୁବିଧା ସୁଯୋଗ ନଦେଇ ସମାଜ ସେମାନଙ୍କୁ ହେୟଜ୍ଞାନ କରିବାର ବହୁ ଦୃଷ୍ଟାନ୍ତ ଅଛି । ଅମୃତାପ୍ରୀତମଙ୍କ କଥା ତ ଆଗରୁ କହିଛି । ସେହିପରି ବିଖ୍ୟାତ କଥକ ନୃତ୍ୟ ଶିଳ୍ପୀ ମାୟା ରାଓଙ୍କ କଥା ମନେ ପକାନ୍ତୁ ।

ସେ ରକ୍ଷଣଶୀଳ ବ୍ରାହ୍ମଣ ପରିବାରରେ ଜାତ ହୋଇ ସୁଦ୍ଧା ଦାକ୍ଷିଣାତ୍ୟରୁ ଚାଲିଯାଇ ଶମ୍ଭୁ ମହାରାଜଙ୍କ ତତ୍ତ୍ୱାବଧାନରେ କଥକ ନୃତ୍ୟ ଶିକ୍ଷା କରି ହେଲସିଙ୍କିରେ ଅନୁଷ୍ଠିତ ଆନ୍ତର୍ଜାତିକ ନୃତ୍ୟ ଉତ୍ସବରେ ସ୍ୱର୍ଣ୍ଣପଦକ ଲାଭକରି ବିଶ୍ୱଦରବାରରେ ଭାରତକୁ ଗୌରବାନ୍ୱିତ କଲେ । ଯଦି ମାଆ ବନ୍ଧୁବାନ୍ଧବଙ୍କ ପରାମର୍ଶ ଅନୁଯାୟୀ ଏକ ରକ୍ଷଣଶୀଳ ପରିବାରରେ ବିବାହ କରିଥାନ୍ତେ, ତେବେ ତାଙ୍କର ସେଇ ପ୍ରତିଭା ଓଢ଼ଣି ତଳେ, ଘରର ଅନ୍ଧାର କୋଣରେ ମଉଳି ଯାଇଥାନ୍ତା । ସୃଜନଶୀଳ ନାରୀମାନେ ଏକଜିଦିଆ । ସେମାନେ ବିଦ୍ରୋହୀ ମନୋଭାବ ପୋଷଣ କରିଥାନ୍ତି । ସେସବୁ ଅଜ୍ଞ ପୁରୁଷମାନେ ବୁଝି ପାରନ୍ତି ନାହିଁ । ନିଜ ପ୍ରତିଭାର ବିକାଶ ପାଇଁ ନିଜକୁ ସଂପୂର୍ଣ୍ଣ ନିୟୋଜିତ କରିବା ଦ୍ୱାରା ଅନେକ ସ୍ତ୍ରୀଙ୍କ ପରିବାର ସହ ମନୋମାଳିନ୍ୟ ହୋଇଥାଏ । ଅର୍ଥ, ପୃଷ୍ଠପୋଷକତା ତଥା ଉତ୍ସାହ ଅଭାବରୁ ନାରୀମାନଙ୍କ ସୃଜନଶୀଳତା ସମାଜରେ ଉପଯୁକ୍ତ ସ୍ଥାନ ଓ ଆଦର ପାଇପାରେ ନାହିଁ । ସମାଜରେ ତଥା ନିମ୍ନଶ୍ରେଣୀର ବ୍ୟକ୍ତିବିଶେଷଙ୍କ ଠାରେ ଉନ୍ନତ କଳା, ସାହିତ୍ୟ ତଥା ସଂଗୀତ, ନୃତ୍ୟାଦିର ପରାକାଷ୍ଠା ଦେଖିବାକୁ ମିଳେ ହେଲେ ବିକଶିତ ହୁଏନି । ଅବଶ୍ୟ ଦେଶର ସ୍ୱାଧୀନତା ପରେ ଅନେକ ସ୍ତ୍ରୀ ପରିବାର ତଥା ସାମାଜିକ ବନ୍ଧନ ତଥା କଟକଣାରୁ ବାହାରି ଆସି ନିଜ ପ୍ରତିଭାର ପୂର୍ଣ୍ଣ ବିକାଶ ପାଇଁ ସୁବିଧା ଓ ସୁଯୋଗ ପାଇଛନ୍ତି କିନ୍ତୁ ସେମାନଙ୍କ ସଂଖ୍ୟା ନଗଣ୍ୟ । ଯେଉଁ ଦେଶରେ ଶତକଡ଼ା ୭୫ ଜଣ ନାରୀ ନିରକ୍ଷର, ସେମାନଙ୍କ ପକ୍ଷେ ସମାଜ ତଥା ପୁରୁଷଙ୍କ ଶୃଙ୍ଖଳ ମଧ୍ୟରୁ ବାହାରି ଆସିବା ସହଜ କି ?

ମାନବସମ୍ବଳ ବିକାଶ ବିଭାଗ ତରଫରୁ ନାରୀମାନଙ୍କ ବିକାଶ ପାଇଁ ଅନେକ ନୂତନ କାର୍ଯ୍ୟକ୍ରମ ନିଆଯାଇ କର୍ମଜୀବୀ ମହିଳାମାନେ ତାଲିମ ପାଇ ଯେପରି ଉପଯୁକ୍ତ ପାରିଶ୍ରମିକ ପାଇ ପାରିବେ, ତା'ର ବ୍ୟବସ୍ଥା ହୋଇଛି । ଏପରିକି ବିବାହିତ ସ୍ତ୍ରୀ ଲୋକମାନେ ମଧ୍ୟ ବିବାହ ଯୋଗୁଁ ବଞ୍ଚିତ ହୋଇଥିବା ନିଜ ପ୍ରତିଭା ତଥା ଜ୍ଞାନର ବିକାଶ ପାଇଁ ସୁଯୋଗ ପାଇବା ନିମନ୍ତେ ଆବଶ୍ୟକ ବାତାବରଣ ସୃଷ୍ଟି କରାଯାଉଛି । ସରକାରଙ୍କ ତରଫରୁ ସେମାନଙ୍କୁ ବିଭିନ୍ନ ଦିଗରେ ଉତ୍ସାହିତ କଲେ ମଉଳି ଯାଉଥିବା ସମାଜର ଏକ ଅଙ୍ଗ ଯେ ଦେଶ ତଥା ଜାତିର ପ୍ରଗତି ପାଇଁ ନିଶ୍ଚୟ ସାହା ହେବ ଏଥିରେ କେହି ଦ୍ୱିମତ ହେବେନାହିଁ ବୋଲି ଆଶା କରାଯାଏ ।



(ମାଧ୍ୟମିକ ଶିକ୍ଷା ପରିଷଦ, ଓଡ଼ିଶାର ଜର୍ଣ୍ଣାଲରେ ୧୯୮୫ ରୁ ୧୯୮୯ ମଧ୍ୟରେ ପ୍ରକାଶିତ)

(ସୂଚନା : ଉପରୋକ୍ତ ପ୍ରବନ୍ଧ "ଶିକ୍ଷା, ଶିକ୍ଷକ ଓ ସାମାଜିକ ସମସ୍ୟା" ୧୯୮୫ ରୁ ୧୯୮୯ ମସିହା ମଧ୍ୟରେ ବିଭିନ୍ନ ସମୟରେ ପ୍ରକାଶିତ ହୋଇଥିଲା । ଏହି ପ୍ରବନ୍ଧ ଅନେକ ଗୁଡ଼ିଏ ତଥ୍ୟ ଓ ପରିସଂଖ୍ୟାନ (Statistics) ଅଛି, ଯାହାକି ସେହି ସମୟର । ଏଣୁ ପ୍ରବନ୍ଧର ରଚିବୋଧକତାକୁ ଆଗରେ ରଖି ଏଥିରେ କୌଣସି ସଂଶୋଧନ କରାଯାଇ ନାହିଁ ।)

# ସାମାଜିକ ପରିବର୍ତ୍ତନ

ବ୍ୟକ୍ତିକୁ ନେଇ ସମାଜ। ଏଣୁ ବ୍ୟକ୍ତିର ପରିବର୍ତ୍ତନରେ ସାମାଜିକ ଜୀବନରେ ପରିବର୍ତ୍ତନ ଘଟିଥାଏ। ଏକଛତ୍ରବାଦୀ ଶାସନରୁ ମୁକ୍ତ ହେବା ପରେ ଆମ ଲୋକଙ୍କର ବିଦେଶ ଗମନର ପଥ ସୁଗମ ହେଲା, ଫଳରେ ଦେଶର ପାରମ୍ପରିକ ବେଶଭୂଷା, ଖାଦ୍ୟପେୟ, ଚଳଣି, ସଂସ୍କୃତିର ପରିବର୍ତ୍ତନ ଘଟିଲା। ପୁରାତନ ଚଳଣିରେ ଲୋକେ ଏତେ ଅତିଷ୍ଠ ହୋଇଥିଲେ ଯେ ନୂତନତାକୁ ଗ୍ରହଣ କରିବାକୁ ସେମାନଙ୍କୁ ବେଶି ସମୟ ଲାଗିଲା ନାହିଁ। ଟିଭି, ରେଡ଼ିଓ, ଖବରକାଗଜ ଏଥିପାଇଁ ଖୋରାକ ଯୋଗାଇଲା। ଗଣମାଧ୍ୟମରେ ବିଜ୍ଞାପନକୁ ଦେଖି ଲୋକେ ପୋଷାକ ପିନ୍ଧିବାକୁ ଓ ଖାଦ୍ୟ ଖାଇବାକୁ ଚାହିଁଲେ। ମଣିଷ କେଉଁଟି ଉତ୍କୃଷ୍ଟ ଓ କେଉଁଟି ନିକୃଷ୍ଟ କେବେ ବିଚାର କରେ ନା। ଇନ୍ଦ୍ରିୟମାନଙ୍କୁ ତୋଷଣ କରିବାକୁ ସେ ବ୍ୟଗ୍ର।

ଯଦିଓ ଏହି ପରିବର୍ତ୍ତନକୁ ପ୍ରାଚୀନ ପନ୍ଥୀ ଲୋକେ ପସନ୍ଦ କରୁନାହାନ୍ତି, ଯୁବଗୋଷ୍ଠୀକୁ ଏଥିରୁ ନିବୃତ୍ତ କରିବାକୁ ସେମାନେ ଅସମର୍ଥ। ଉଚ୍ଚଶିକ୍ଷିତ ଯୁବଗୋଷ୍ଠୀ ଗ୍ରାସାଚ୍ଛାଦନ ପାଇଁ ବିଦେଶ ଉପରେ ନିର୍ଭର କରୁଛନ୍ତି। ଏହା ଫଳରେ ଖାଦ୍ୟ, ପେୟ ଓ ସାଂସ୍କୃତିକ ବିନିମୟ ହେବା ସ୍ୱାଭାବିକ। ପାଶ୍ଚାତ୍ୟ ଦେଶରେ ଐକିକ ପରିବାରର ଦୋଷ, ଦୁର୍ବଳତାର ଅଭିଜ୍ଞତା ହେବା ପରେ ସେଠାରେ ପୁଣି ଯୁଗ୍ମ ପରିବାର ପ୍ରତି ଆଦର ବଢୁଛି, ଅଥଚ ଆମ ଦେଶରେ ଯୁଗ୍ମ ପରିବାରର କ୍ରମେ ବିଲୟ ଘଟିଲାଣି। ସାମ୍ପ୍ରତିକ ସାମାଜିକ ବ୍ୟବସ୍ଥା ଏକ ସନ୍ଧିକ୍ଷଣ ଦେଇ ଗତି କରୁଛି। ସ୍ୱାଧୀନତାର ପୂର୍ବବର୍ତ୍ତୀ ଲୋକେ ପୁରାତନ ଚଳଣିକୁ ଜାବୁଡ଼ି ଧରିଥିବା ବେଳେ ପରବର୍ତ୍ତୀ ପିଢ଼ି ପୁରାତନର କିଛି ବିଧିରକ୍ଷାକରି ନୂତନତା ପ୍ରତି ବିଶେଷ ଭାବେ ଆକୃଷ୍ଟ। ଯୁବଗୋଷ୍ଠୀ ପର୍ବପର୍ବାଣୀ ପାଳନ କରୁଛନ୍ତି, କିନ୍ତୁ ପାଳନର ଢ଼ଙ୍ଗ ଓ ଢାଞ୍ଚା ବଦଳିଯାଇଛି। ମନ୍ଦିରକୁ ଦର୍ଶନ ପାଇଁ ଗଲେ ଆଉ ଧୋତି, ଚାଦର ବା ଶାଢ଼ୀର ବ୍ୟବହାର ନାହିଁ, ପେଣ୍ଟ, ସାର୍ଟ, ପଞ୍ଜାବୀ, ସଲଓ୍ୱାର ଆଦି ପିନ୍ଧି ଗଲେ ମଧ୍ୟ କାହାରି ବାରଣ ନାହିଁ। ସେ ସବୁକୁ ସମାଜ ଗ୍ରହଣ କରି ନେଲାଣି। ଯୁବତୀ ଝିଅ, ବିବାହିତ ସ୍ତ୍ରୀଲୋକଙ୍କ ମଧ୍ୟରେ ସଟ୍‌ସୁଟ, ପାରାଲାଲ୍‌, ବେଲବଟମ୍‌, ସ୍କଟ ଆଦି ପୋଷାକର ଆଦର ବଢ଼ିଛି। ଏପରିକି, ବିବାହିତ ସ୍ତ୍ରୀଲୋକେ ଘରେ ମାନ୍ୟଗଣ୍ୟ ବ୍ୟକ୍ତିଥିଲେ ବି ମେକ୍ସି, ଲେହେଙ୍ଗା ବ୍ୟବହାର କରୁଛନ୍ତି। କିଏ କ'ଣ ଭାବିବ ସେଥିପ୍ରତି ସେମାନଙ୍କ ଭ୍ରୂକ୍ଷେପ ନାହିଁ।

ଏ ଦେଶରେ ଖାଦ୍ୟର ଢ଼ାଞ୍ଚା ମଧ୍ୟ ବଦଳିବାରେ ଲାଗିଛି। ଆମ ଓଡ଼ିଶାର ପୂର୍ବର ଜଳଖିଆ

ଥିଲା ସରୁ ଚକୁଳି, ଚିତୋଉ ଆଦି ସେସବୁକୁ ପିଲାଙ୍କ ପସନ୍ଦ ନାହିଁ । ତା' ବଦଳରେ ଚାଓମିନ୍, ଚାଟ, ପିଜା, ସେଣ୍ଡଉଇଚ, ମେଗି, ବରଗର୍ ଆଦି ଖାଇବାକୁ ଆଗ୍ରହୀ । ବାହାଘର ବା କୌଣସି ପାରିବାରିକ ଉତ୍ସବରେ ପଲାଉ, ଚିକେନ୍, ମଟନ୍ ଆଦି ସହ ଉପରୋକ୍ତ ତାଲିକାଭୁକ୍ତ ଦ୍ରବ୍ୟ ହେବା ନିହାତି ଦରକାର, ନଚେତ୍ ନିମନ୍ତ୍ରକ ବଦନାମ ହେବା ସୁନିଶ୍ଚିତ । ଆଗେ ଭୋଜିରେ ପରିବେଷଣ କରୁଥିବା ମଣ୍ଡା, କାକରା, ମାଲପୁଆ ଆଦି ଆଉ ଦେଖିବାକୁ ମିଳେ ନାହିଁ । ଆମ ଦେଶର ଆଧୁନିକ ବୋଲାଉଥିବା ସ୍ତ୍ରୀ ଲୋକଙ୍କୁ ଆଉ ମଣ୍ଡା ଗଢ଼ି ବି ଆସୁନାହିଁ । ଘରେ ଦେବଦେବୀଙ୍କ ପୂଜା ପାଇଁ ବେଶୀ ହେଲେ ପୁରି ଓ କ୍ଷୀରୀ ହେଉଛି । ଭୋଜିରେ ଥଣ୍ଡା ପାନୀୟର ବ୍ୟବସ୍ଥା କରିବାକୁ ବାଧ । ପେପ୍‌ସୀ, କୋକାକୋଲା, ଲିମ୍‌କା, ସ୍ପ୍ରାଇଟ୍ ଆଦି ସହ ହ୍ୱିସ୍କି, ସ୍କଚ୍, ରମ୍ ଆଦିର ବ୍ୟବସ୍ଥା ଥିଲେ ଯୁବଗୋଷ୍ଠୀ ଭାରି ଖୁସି । ସାର୍ବଜନୀନ ପୂଜା ପାର୍ବଣରେ ନିଶାସେବନ କରି ରେକର୍ଡ ଡାନ୍ସ, ଡିସ୍‌କୋ ଡାନ୍ସ କରିବା ସାଧାରଣ ଦୃଶ୍ୟରେ ପରିଣତ ହେଲାଣି । ଅଶ୍ଳୀଳ ଗୀତ ଶୁଣି ଶୁଣି କାନ ବି ଅଭ୍ୟସ୍ତ ହେଲାଣି । ସେ ସବୁ ଆଉ ନୂଆ ଲାଗୁନି ବା ଶୁଣିଲେ ବିରକ୍ତି ଭାବ ଆସୁନାହିଁ । ସେସବୁ ପାଇଁ ମନାକରି କେହି ଅପ୍ରୀତିକର ପରିସ୍ଥିତି ମଧ୍ୟକୁ ପଶିବା ପାଇଁ ଚାହୁଁନାହାନ୍ତି ।

ସମାଜରେ ଆଉ ଏକ ମାରାତ୍ମକ ବ୍ୟାଧିର ବ୍ୟାପକତା ବଢ଼ିବାରେ ଲାଗିଛି । ସେ ହେଲା ରାତାରାତି ଧନୀ ହେବାର ନିଶା । ଯେ କୌଣସି ଉପାୟରେ ଧନାର୍ଜନ କରି ଧନୀକ ଗୋଷ୍ଠୀରେ ସାମିଲ ନ ହୋଇପାରୁଥିବା ଲୋକଙ୍କୁ 'ନିକମା' କୁହାଯାଉଛି । ଦୁର୍ନୀତି, ପ୍ରିୟାପ୍ରୀତି ତୋଷଣ, ଲାଞ୍ଚମିଛ ଆଦି ସମ୍ପ୍ରତି ସଂସ୍କୃତିର ଏକ ଅଙ୍ଗରେ ପରିଣତ ହେଲାଣି । ସବୁ ଯୁଗରେ ରାଜା ବା ଶାସକକୁ ସାଧାରଣ ଲୋକେ ଅନୁସରଣ କରନ୍ତି । ଏଣୁ, 'ରାଜାନୁଗତ ଧର୍ମ' - ଏ କଥା ସର୍ବଦା କୁହାଯାଉଛି । ଏକ ଗଣତନ୍ତ୍ର ଦେଶରେ ସାଧାରଣ ଜନତାଙ୍କ ମଧ୍ୟରୁ ନିର୍ବାଚିତ ହୋଇଯାଇଥିବା ବ୍ୟକ୍ତି ଶାସନଗାଦିକୁ ଆସିବା ପରେ ଦୁର୍ନୀତିଗ୍ରସ୍ତ ହୋଇ ନିର୍ଲଜ୍ଜଭାବେ କୋର୍ଟରେ କାଠଗଡା ଭିତରେ ଠିଆହୋଇ ନିଜକୁ ନିର୍ଦ୍ଦୋଷ ବୋଲି ପ୍ରମାଣ କରିବା ଏକ ସାଧାରଣ ଘଟଣା ହେଲାଣି । ଦେଶର ଜନତା ମଧ୍ୟ ସେହି ଆଦର୍ଶକୁ ଗ୍ରହଣ କରିବା ପାଇଁ ପଶ୍ଚାତ୍‌ପଦ ନୁହନ୍ତି ।

ଯୁବସମାଜ ପାଶ୍ଚାତ୍ୟ ସଂସ୍କୃତିକୁ ଅନ୍ଧାନୁସରଣ କରିବା ଫଳରେ ପରିବାରରେ ବୃଦ୍ଧ ପିତାମାତାଙ୍କ ଅବସ୍ଥା ଅତୀବ ଶୋଚନୀୟ । ଯୁଗ୍ମ ପରିବାର ଭାଙ୍ଗିଲା, ପୁଅ ପାଶ୍ଚାତ୍ୟ ସଂସ୍କୃତିର ପ୍ରଭାବରେ ନିଜ ପରିବାରକୁ କେବଳ ସ୍ତ୍ରୀ ଓ ସନ୍ତାନସନ୍ତତିଙ୍କ ମଧ୍ୟରେ ସୀମିତ ରଖି ଅନ୍ୟମାନଙ୍କ ଠାରୁ ଦୂରେଇଗଲା, ବୃଦ୍ଧାବସ୍ଥାରେ ବାପା-ମା' ଏବେ ନିଃସହାୟ । ଚାକିରିଆ ପୁଅ ବର୍ଷେ ବା ଦି'ବର୍ଷରେ ଥରେ ଆସି ବାପା-ମା'ଙ୍କୁ କିଛି ଟଙ୍କାଦେଇ ଚାଲିଗଲେ, ସେ ଭାବୁଛି ତା' କର୍ତ୍ତବ୍ୟ ଯଥାଯଥ ଭାବେ ପାଳନ କଲା; କିନ୍ତୁ ଯେ ଘରେ ଅଛି ତାର ବାପା-ମା'ଙ୍କ ପ୍ରତି ମମତା ନାହିଁ । କାନ୍ଥର ସେ ପାଖରେ ବାପା-

ମା' ରୋଗବ୍ୟାଧିରେ ସଢୁଛନ୍ତି, ଭୋକ ଓପାସରେ ରହୁଛନ୍ତି ଅଥଚ ପୁଅବୋହୂ କାନ୍ଥ ଆରପାଖେ ମଉଜ ମଜଲିସ୍‌ରେ ଦିନ କାଟୁଛନ୍ତି । ବ୍ୟାସକବି ଫକୀରମୋହନଙ୍କ ଯୁଗରେ କାଁ ଭାଁ ଗୋପାଳ ସିନା ଦେଖାଯାଉଥିଲେ ଏବେ 'ଗୋପାଳ'ଙ୍କ ସଂଖ୍ୟା ଗଣି ହେଉନାହିଁ; କାରଣ ସେତେବେଳେ ଇଂରାଜୀ ପାଠୁଆ ଖୁବ୍ କମ୍ ଥିଲେ ଏବଂ ପାଶ୍ଚାତ୍ୟ ସଂସ୍କୃତି ଏ ଦେଶମାଟିକୁ ମାଡ଼ି ପାରିନଥିଲା । ଭାରତୀୟ ସଂସ୍କୃତିରେ 'ପିତୃଋଣ' ପରିଶୋଧ ପାଇଁ ପୁତ୍ରର କର୍ତ୍ତବ୍ୟ ପାଳନ ନିମନ୍ତେ ଯେଉଁ ବ୍ୟବସ୍ଥା ଥିଲା, ସେସବୁ ସମ୍ପ୍ରତି ଯୁବଗୋଷ୍ଠୀ ଜାଣିବାକୁ ବୀତସ୍ପୃହ । ସେମାନଙ୍କ ପକ୍ଷେ ସେ ସବୁ କୁସଂସ୍କାର ବା ଅନ୍ଧବିଶ୍ୱାସ । ଭାରତୀୟ ପରିବାରରେ ଆଉ ଏକ ନୂଆ କଥା ଦେଖାଗଲାଣି । ସେ ହେଲା, ଭାଇ ଭାଇ ମଧ୍ୟରେ ସମ୍ବନ୍ଧ ଦୂରେଇ ଯାଉଛି ଏବଂ ଭଉଣୀ ଭଉଣୀ ମଧ୍ୟରେ ସମ୍ବନ୍ଧ ଘନିଷ୍ଠ ହେବାରେ ଲାଗିଛି । ଏବେ ଭାଇଠାରୁ ଭାଇ ଦୂରରେ ରହିବାକୁ ଇଚ୍ଛା ପ୍ରକାଶ କରୁଥିବା ବେଳେ ଭଉଣୀ ଭଉଣୀ ପୋଡ଼ଶୀ ହୋଇ ରହୁଛନ୍ତି ଏବଂ ଭାଇ ଭଉଣୀ ମଧ୍ୟରେ ସମ୍ବନ୍ଧ ଅଧିକ ଗାଢ଼ତର ହେଉଛି । ଏ ସମ୍ବନ୍ଧ ଆମ ଜଗନ୍ନାଥ ସଂସ୍କୃତିର ଏକ ଅଂଶବିଶେଷ; କିନ୍ତୁ ଦେଶରେ ହିନ୍ଦୁ ଆଇନ ପ୍ରଣୟନ ହେବା ପରେ ପୈତୃକ ସମ୍ପତ୍ତିରୁ ଭାଗ ପାଇବା ପାଇଁ ଭାଇଭଉଣୀ ମଧ୍ୟରେ ବିବାଦ, କୋର୍ଟକଚେରୀରେ ମାଲିମକଦ୍ଦମା ଆରମ୍ଭ ହେଲାଣି । ଭକ୍ତ କବି ମଧୁସୂଦନଙ୍କ ଉକ୍ତି :

*"ବୈକୁଣ୍ଠ ସମାନ ଆହା ଅଟେ ସେହି ଘର*
*ପରସ୍ପର ସ୍ନେହ ଯହିଁ ଥାଏ ନିରନ୍ତର ।"*

ସେସବୁ ଗପରେ ପରିଣତ ହେଲାଣି । ଆଗକାଳର ଯୌଥ ପରିବାରରେ ବଂଶାନୁକ୍ରମେ ସମସ୍ତେ ଏକାଠି ରହୁଥିଲେ । ଏକଥା ଏବର ଯୁବଗୋଷ୍ଠୀ ବିଶ୍ୱାସ କରିବେ ନାହିଁ ।

ସମାଜରେ ଅନ୍ୟ ଏକ ପରିବର୍ତ୍ତନ ଦେଖାଯାଉଛି । ଆମ ଦେଶରେ ଜାତିପ୍ରଥା ବହୁଦିନରୁ ପ୍ରଚଳିତ । ପୂର୍ବେ ଜାତିମାନଙ୍କର ଗୋଟିଏ ଗୋଟିଏ ସ୍ୱତନ୍ତ୍ର ସଭା ଥିଲା ଏବଂ ସେଥିରେ ଜାତିର ଚଳଣି ସମ୍ବନ୍ଧୀୟ ନୀତିନିୟମ ଆଲୋଚନା ହେଉଥିଲା । କେହି ସମାଜ ପ୍ରଣୀତ ନିୟମର ବହିର୍ଭୂତ କାମ କଲେ ତା'ପ୍ରତି ଦଣ୍ଡବିଧାନ ହେଉଥିଲା; କିନ୍ତୁ ଏବେ ରାଜନୈତିକ ଫାଇଦା ଉଠାଇବା ନିମନ୍ତେ ଜାତି ସଂଗଠନକୁ ଏକ ଅସ୍ତ୍ରରୂପେ ବ୍ୟବହାର କରାଯାଉଛି ।

ଦେଶରେ ଗଣତନ୍ତ୍ର ଶାସନ ପ୍ରଚଳିତ ହେବା ପରେ ଭୋଟ୍ ରାଜନୀତି ଯୋଗୁଁ ସାମାଜିକ ଏକତା, ସଂହତି ଭାଙ୍ଗି ବୁରମାର ହୋଇଗଲାଣି । ରାଜନୀତିକୁ କେନ୍ଦ୍ରକରି ଦେଶରେ ପ୍ରାୟ ଦଙ୍ଗା, ହତ୍ୟା, ଅପହରଣ, ଧର୍ଷଣ ଲାଗିରହିଛି ଏବଂ ଏ ଘଟଣାମାନ ଦୈନନ୍ଦିନ ସମ୍ବାଦପତ୍ରର ପୃଷ୍ଠାମଣ୍ଡନ କରୁଛି । ଶିକ୍ଷିତ ବେକାର ସମସ୍ୟା ଏଡ଼େ ଗୁରୁତର ଆକାର ଧାରଣ କଲାଣି ଯେ ଯୁବଗୋଷ୍ଠୀ ଦଳୀୟ ରାଜନୀତିକୁ ପରିତ୍ରାଣର ଏକମାତ୍ର ଆଶ୍ରୟସ୍ଥଳୀ ବୋଲି ବିବେଚନା କଲେଣି । ଅପରପକ୍ଷରେ, ଦଳୀୟ ନେତାଗଣ

ଶିକ୍ଷିତ ଯୁବକମାନଙ୍କ ଜରିଆରେ ସଂକୀର୍ଣ୍ଣ ରାଜନୈତିକ ସୁବିଧା ଉଠାଇବା ପାଇଁ ନାନା ଭାବରେ ସେମାନଙ୍କୁ ପ୍ରଲୋଭିତ କରୁଛନ୍ତି । ଏ କୁତ୍ସିତ ରାଜନୀତି କେବଳ ସହରର ପରିସୀମା ମଧ୍ୟରେ ସୀମିତ ନୁହେଁ, ଗ୍ରାମାଞ୍ଚଳକୁ ମଧ ବିସ୍ତାରିତ ହୋଇ ଗ୍ରାମ୍ୟ ବାତାବରଣକୁ ଅଶାନ୍ତ କଲାଣି । ଆମ ସମାଜରେ ଦୁଇ ପ୍ରକାର ମନୋଭାବ ପରିଲକ୍ଷିତ ହୁଏ । ଏକ ପାଖେ ବ୍ୟକ୍ତିଗତ ସ୍ୱାର୍ଥସାଧନ ଆଡ଼କୁ ଅନ୍ୟପାଖେ ବିଶ୍ୱାୟନ ଆଡ଼କୁ ଅର୍ଥାତ୍ ଜାତି, ଧର୍ମ, ପରମ୍ପରା, ଐତିହ୍ୟ ତଥା ଭୌଗଳିକ ପରିସୀମାକୁ ଭାଙ୍ଗି ଏସବୁ ବଳୟରୁ ମୁକ୍ତ ହେବାକୁ । ମଣିଷ ଚାହେଁ ପରିବର୍ତ୍ତନ । ଏହାକୁ ରୋକିବା ସହଜ ସାଧ ନୁହେଁ । ପରିବର୍ତ୍ତନ ଗଡ଼ି ଚାଲେ ସ୍ୱାଭାବିକ ଭାବରେ ।



(ସମାଜ, ଅକ୍ଟୋବର ୨୨, ୨୦୦୩ରେ ପ୍ରକାଶିତ)

# ପଶ୍ଚିମ ଜୀବନ

ପଶ୍ଚିମ ଜୀବନ ଯେ କେତେ ଦୁର୍ବିସହ, ତା କେବଳ ଅନୁଭବୀ ହିଁ ଜାଣେ । ଦୁଇ ଗୋଡ଼ିଆ ମଣିଷକୁ ତିନି ଗୋଡ଼ିଆ ହେବାକୁ ପଡ଼େ । ସଂସାର ପ୍ରତି ବୈରାଗ୍ୟ ଜନ୍ମେ, ଶରୀରର କ୍ଷୀଣତା ଉଣ୍ଡି ମାଡ଼ି ବସନ୍ତି ଦୁରାରୋଗ୍ୟ । ଡାକ୍ତରଙ୍କ ପରାମର୍ଶ ରୋଗଗୁଡ଼ିକରୁ ଉପଶମ ପାଇଁ ପ୍ରାତଃଭ୍ରମଣ ହିଁ ଏକମାତ୍ର ମହୌଷଧୀ । କେହି ହୃଦରୋଗୀ ତ କାହାରି ମଧୁମେହ ରୋଗ ଓ କାହାର ଉଚ୍ଚ ରକ୍ତଚାପ । ସେମାନେ ଅନନ୍ୟୋପାୟ । ଏମାନଙ୍କ ମଧ୍ୟରୁ ଅନେକେ ଥିଲେ ସୂର୍ଯ୍ୟବଂଶୀ । ଯୌବନାବସ୍ଥାରେ କେବେ ଦିନ ତିନିଘଡ଼ି ନହେଲେ ନିଦ ଭାଙ୍ଗୁନଥିଲା, ଏବେ କାଉ କା କଲେ ଧଡ଼ପଡ଼ ହୋଇ ଉଠି ନିତ୍ୟକର୍ମ ସାରି ପ୍ରାତଃଭ୍ରମଣରେ ବାହାରି ପଡୁଛନ୍ତି । ହାଫ୍‌ପେଣ୍ଟ, ପତଳା ସାର୍ଟ ବା ଗଞ୍ଜି, କପଡ଼ା ଜୋତା ପିନ୍ଧି ବାଡ଼ିଟିଏ ଧରି ଚାଲୁଛନ୍ତି । ରାଜରାସ୍ତାରେ ଏକୁଟିଆ ବା ସାଙ୍ଗସାଥୀଙ୍କ ସହ । କେତେକ ସଙ୍ଗରେ ସହଧର୍ମିଣୀ ବି ପ୍ରାତଃଭ୍ରମଣ କରନ୍ତି କାରଣ ସେ ବି ରୋଗଗ୍ରସ୍ତା ଯାହାଙ୍କ ଜୀବନ କଟିଛି ବାତାନୁକୂଳ କୋଠରି ଭିତରେ । ଯାହାଙ୍କ ସୂକ୍ଷ୍ମ ତନୁରେ ସୂର୍ଯ୍ୟକିରଣ ଟିକିଏ ବାଜିଲେ ଲାଜକୁଳୀ ଲତାପରି ଝାଉଁଳି ପଡୁଥିଲେ, ସ୍ୱାମୀଙ୍କ ଚାକିରିରୁ ଅବସର ପରେ ତାଙ୍କ ଶରୀର ପାଇଁ ବି ଲୋଡା ପଡୁଛି ମୁକ୍ତବାୟୁ ଓ ଅଙ୍ଗଚାଳନା ।

ପ୍ରାତଃଭ୍ରମଣରେ ବାହାରୁଛନ୍ତି ଅବସରପ୍ରାପ୍ତ ସର୍ବଭାରତୀୟ ପ୍ରଶାସନିକ ଅଫିସର ଯେ ଚାକିରି କାଳରେ କ୍ଷମତାର ମଦମତ୍ତରେ ଧରାକୁ ସରା ମଣୁଥିଲେ; ଯାହାଙ୍କ ଆଖିରେ ମଣିଷ ଗୁଡ଼ାକ ଚାରିଗୋଡ଼ିଆ ପଶୁ ପରି ଦିଶୁଥିଲେ, ଯେ ବଙ୍ଗଳାର ପରଦା ଅନ୍ତରାଳରୁ ବାହାରିବା ମାତ୍ରେ ଅପେକ୍ଷମାଣ ଜନତା ଯାହାର ପାଦତଳେ ଲୋଟି ଯାଉଥିଲେ ଏବଂ ମଟରଗାଡ଼ିର କବାଟ ଖୋଲି ଛିଡ଼ା ହୋଇଥିବା ଅଧସ୍ତନ କର୍ମଚାରୀଙ୍କଠାରୁ ସଲାମ ନେଇ ଗାଡ଼ିରେ ବସିବାମାତ୍ରେ ଡ୍ରାଇଭରକୁ ଆଦେଶ ଦେଉଥିଲେ ଗାଡ଼ି ଚଳେଇବା ପାଇଁ, ସେ ବି ଆଜି ରାଜରାସ୍ତାରେ । ଆଜି ତାଙ୍କର ମନେ ପଡୁଛି ବାଲ୍ୟସାଥୀ, ସହପାଠୀଙ୍କ କଥା । ସାଙ୍ଗସାଥୀଙ୍କ ଥଟ୍ଟା ପରିହାସର ସମ୍ମୁଖୀନ ହୋଇ ଲଜ୍ଜାରେ ତାଙ୍କ ମଥା ନଇଁପଡୁଛି । ହେଲେ କରିବେ କ'ଣ ? ସବୁ ସହି ନେଉଛନ୍ତି ମୁଣ୍ଡପାତି ।

ପ୍ରାତଃଭ୍ରମଣର ସାଥୀ ମଧ୍ୟ ହେଉଛନ୍ତି କେତେଜଣ ଇଞ୍ଜିନିୟର । ସେମାନଙ୍କ ଅନ୍ତିମ ଜୀବନ କଟୁଛି ହା ହତୋଽସ୍ମିରେ । କାହା ପୁଅ ବିଦେଶରେ ତ କାହାପୁଅ ବାଲୁଙ୍ଗା ହୋଇ ବୁଲୁଛି । ଅତୀତ ଜୀବନ କଥା ସ୍ମରଣ କରି ସେମାନେ ମ୍ରିୟମାଣ । ଗସ୍ତରେ ଗଲେ ଡାକବଙ୍ଗଳାରେ ଖାନ୍‌ସମା ଦ୍ୱାରା

ପ୍ରଭୃତି ଚର୍ବ୍ୟ-ଚୋଷ୍ୟ-ଲେହ୍ୟ ଓ ପେୟରେ ମଧ୍ୟାହ୍ନ ଏବଂ ରାତ୍ରଭୋଜନ କେତେ ପ୍ରୀତିକର ହେଉଥିଲା । ଏବେ ସେସବୁ ଦୁର୍ଲଭ । ଖାଇଖାଇ ପେଟରେ ଚର୍ବି ଜମି ଯାଇଛି, ପୁଣି ରକ୍ତରେ କୋଲଷ୍ଟ୍ରାଲ । ଡାକ୍ତର କହନ୍ତି ପରିଶ୍ରମ କରିବାକୁ ବା ଅନ୍ତତଃ ପାଞ୍ଚ କିଲୋମିଟର ବାଟ ଚାଲିବାକୁ । ଏ ବୟସରେ ବା କରିବେ କ'ଣ ? ଜୀବନ ବିକଳରେ ଅନ୍ଧାରରୁ ଉଠି ଧାଉଁଛନ୍ତି । ଏମାନଙ୍କ ମଧ୍ୟରୁ କାହା କାହାର ଅଣ୍ଟାବ୍ୟଥା ରୋଗ । ଖାଲି ପଟାଖଟରେ ବା ଭୂମି ଶୟନ ପାଇଁ ଡାକ୍ତରଙ୍କ ପରାମର୍ଶ । ଯାହାର ଜୀବନ କଟିଛି ତୂଳିତଳ୍ପ ବା ଡ଼ନ୍‌ଲଫ୍ ଗଦିରେ, ତା ପାଇଁ ଏ କମ୍ କଷ୍ଟଦାୟକ ନୁହେଁ । ଏକେତ ନିଃସଙ୍ଗ ଜୀବନ, ତାହା ଉପରେ ପୁଣି ରୋଗ ।

ଯିଏ ଜୀବନସାରା ରୋଗର ଉପଶମ ପାଇଁ ଅନ୍ୟକୁ ପରାମର୍ଶ ଦେଇଛି, ସେ ବି ବୟସ ଗଡ଼ିଗଲାପରେ ରୋଗାକ୍ରାନ୍ତ । ତା ପାଇଁ ମଧ ପ୍ରାତଃ-ଭ୍ରମଣ ଜରୁରୀ । ଜରା-ରୋଗ-ମୃତ୍ୟୁକୁ କେହି ଏଡ଼ାଇ ପାରିବେ ନାହିଁ । ଏହା ସମ୍ଭବ ହେଉଥିଲେ ଶାସକ ଓ ଧନୀକ - ଗୋଷ୍ଠୀ ଅମର ହୋଇ ରହିଯାଆନ୍ତେ । ଯିଏ ରୋଗୀର ମୁମୂର୍ଷୁ ଅବସ୍ଥାରେ ଅର୍ଥ ନ ପାଇଲେ ଚିକିତ୍ସାପାଇଁ ପାଦେ ଆଗଉ ନଥିଲା, ଯିଏ ରୋଗୀର ପେଟ ଚିରି ଅନ୍ତଃବୁଜୁଳା ବାହାରେ ପକାଇ ପଇସା ନପାଇଲେ ସିଲାଇ କରିବାକୁ ମନାକରୁଥିଲା, ସେ ଏବେ ରୋଗଜର୍ଜରିତ । ସେ ଅନ୍ୟ ନିକଟକୁ ଧାଉଁଛନ୍ତି ରୋଗର ନିଦାନ ଓ ଚିକିତ୍ସାପାଇଁ । ମନେ ପଡୁଛି ଅତୀତ କଥା । ବଡ଼ ବଡ଼ ସହରରେ ଏକାଧିକ କୋଠା । ସେସବୁ ହେବ କ'ଣ ?

ଜୀବନବ୍ୟାପୀ ସାଧନା ଓ ଅଧ୍ୟବ୍ୟବସାୟ ଦ୍ୱାରା ଅର୍ଜିତ ଜ୍ଞାନଭାରରେ ନଇଁ ପଡୁଥିବା ଜ୍ଞାନାକର ଅଧ୍ୟାପକ ବି ଅନ୍ତିମ ଜୀବନରେ ରୋଗମୁକ୍ତ ନୁହନ୍ତି । ସେ ପେଟ ଯନ୍ତ୍ରଣା, ଉଚ୍ଚ ରକ୍ତଚାପ ରୋଗରେ ପୀଡ଼ିତ । ପାହାନ୍ତି ପହରରେ ରାଜରାସ୍ତା କଡ଼ରେ ସେମାନଙ୍କ ସହ ଅନ୍ୟମାନଙ୍କ ମିଳନ ହୁଏ । ପରସ୍ପର ପରସ୍ପରକୁ ନିଜର ଦୁଃଖଭରା କାହାଣୀ କହନ୍ତି । ସମାଜର ଉଚ୍ଚତର ସୋପାନର ବ୍ୟକ୍ତିବିଶେଷଙ୍କ ଏଇ କେତୋଟି ଦୃଷ୍ଟାନ୍ତ ମାତ୍ର । ଅନ୍ୟାନ୍ୟ ସରକାରୀ ଓ ବେସରକାରୀ ସଂସ୍ଥାର ଅବସରପ୍ରାପ୍ତ କର୍ମଚାରୀ, ବଣିକ ଗୋଷ୍ଠୀର କେତେକ ବୃଦ୍ଧ ବୃଦ୍ଧା ରୋଗ ଉପଶମ ପାଇଁ ପ୍ରାତଃଭ୍ରମଣ କରିବାକୁ ବାଧ୍ୟ ହୁଅନ୍ତି । ଏଣୁ ଏଇ ପ୍ରାତଃଭ୍ରମଣ ସବୁ ଶ୍ରେଣୀର ବ୍ୟକ୍ତିଙ୍କ ମିଳନର ଯାତ୍ରା । ମଣିଷ ଭୁଲିଯାଏ ଉଚ୍ଚନୀଚ ଭେଦ । ଅତୀତରେ କରିଥିବା ଭୁଲକୁ ସ୍ମରଣ କରି ଅନୁତାପ କରେ । ଯୌବନ ଚପଳତାର ବଶବର୍ତ୍ତୀ ହୋଇ ବିଳାସବ୍ୟସନ ପାଇଁ ବ୍ୟବହୃତ ସାମଗ୍ରୀ ଉତ୍ତରଜୀବନରେ ଦୁଃଖର କାରଣ ହୋଇଥାଏ । ଏକଥା ଚିନ୍ତା କରିବାକୁ ମଣିଷ ଯୌବନାବସ୍ଥାରେ ଅବକାଶ ପାଏନା । ବାର୍ଦ୍ଧକ୍ୟରେ ହିଁ ସେ ଚେତନା ସୃଷ୍ଟି ହୁଏ । ଏଇ ପ୍ରାତଃଭ୍ରମଣ ହିଁ ସାମ୍ୟ, ମୈତ୍ରୀର ପରିଚାୟକ କହିଲେ ଅତ୍ୟୁକ୍ତି ହେବନାହିଁ । ବାର୍ଦ୍ଧକ୍ୟ ମୃତ୍ୟୁର ପୂର୍ବାବସ୍ଥା । ସମାଜର ସମୀକରଣ ପାଇଁ ଜ୍ୱଳନ୍ତ ପ୍ରତୀକ ହେଉଛି ମୃତ୍ୟୁ, କାରଣ ଶ୍ମଶାନରେ ଉଚ୍ଚନୀଚ ଭେଦଭାବ

ନଥାଏ । ସେଠାରେ ରାଜା-ପ୍ରଜା, ଧନୀ-ଦରିଦ୍ର ସମସ୍ତେ ସମାନ । ଏଣୁ ବାର୍ଦ୍ଧକ୍ୟାବସ୍ଥା ସମାଜକୁ ସାମ୍ୟବାଦ ପ୍ରତିଷ୍ଠାପାଇଁ ଦିଗ୍‌ଦର୍ଶନ ଦେଇଥାଏ ।

କୃଷକ ଓ ଶ୍ରମିକ ଗୋଷ୍ଠୀ ଏ ସବୁର ବ୍ୟତିକ୍ରମ । ପ୍ରାତଃଭ୍ରମଣରେ ଏ ଗୋଷ୍ଠୀ ସାମିଲ ହୁଅନ୍ତି ନାହିଁ, ସେମାନଙ୍କୁ ସାମିଲ ହେବାପାଇଁ ଆବଶ୍ୟକ ପଡ଼େନା । ସେମାନେ ଜୀବନସାରା ଝାଳବୁହା ପରିଶ୍ରମ କରନ୍ତି, ପେଟକୁ ଗଣ୍ଡେ ଦାନା ଓ ଅଣ୍ଟାକୁ ଖଣ୍ଡେ କନା ପାଇଁ । ଏମାନଙ୍କ ଜୀବନ ଧନୀକ ଗୋଷ୍ଠୀର ସୁଖଶାନ୍ତି ପାଇଁ । ଏମାନେ ମଧୁମେହ ବା ଉଚ୍ଚ ରକ୍ତଚାପ ରୋଗରେ ଆକ୍ରାନ୍ତ ହେବା କ୍ୱଚିତ୍ ଦେଖାଯାଏ । ଏମାନଙ୍କ ଜୀବନରେ ଅବସର ବୋଲି କିଛିନାହିଁ । ପରିଶ୍ରମ କରି କରି ଟଳି ପଡ଼ନ୍ତି । ଏମାନଙ୍କ ଜୀବନ ବୃତ୍ତାନ୍ତ କେବେ ଲେଖାହୁଏନା ।

ପଶ୍ଚିମ ଜୀବନ । ମଣିଷ ଅସ୍ତାଚଳରେ ବସି ଅତୀତକୁ ଅବଲୋକନ କରେ । ଅତୀତର ସ୍ମୃତିରେ ସେ ବିଭୋର ହୁଏ । ସେଇ ସ୍ମୃତି ତା'ର ନୀରସ ପ୍ରାଣରେ ଭରିଦିଏ ପ୍ରାଣପ୍ରାଚୁର୍ଯ୍ୟ । ସେଇୟା ହିଁ ତା'ର ସମ୍ବଳ । ତାକୁ ସାଇତି ରଖିଥାଏ ଶେଷ ନିଃଶ୍ୱାସ ଥିବାଯାଏ । ଆଧ୍ୟାତ୍ମିକ ଚିନ୍ତାରୁ ଦୂରେଇ ଯାଇଥିବା ମଣିଷ ଦୁଃଖମୋଚନ ପାଇଁ ବ୍ୟଗ୍ର ହୁଏ, ପରମାତ୍ମାଙ୍କ ସାନିଧ ଲାଭ କରିବାକୁ । ଦିନ ଆସେ, ଲିଭିଯାଏ ତା'ର ଜୀବନ-ଦୀପ । ଏହାହିଁ ଏକମାତ୍ର ସତ୍ୟ, ଜଗତ ମିଥ୍ୟା ।



(ସମାଜ, ଅଗଷ୍ଟ ୩, ୨୦୦୩ରେ ପ୍ରକାଶିତ)

# ଏକବିଂଶ ଶତାବ୍ଦୀର ସଂକଟ

ଏକବିଂଶ ଶତାବ୍ଦୀର ମଣିଷ ସମସ୍ତ ସୁଖସମ୍ପଦର ଅଧିକାରୀ ହୋଇ ମଧ ଏକ ସଂକଟମୟ ପରିସ୍ଥିତିରେ ଗତି କରୁଛି । ବିଜ୍ଞାନ ଓ ପ୍ରଯୁକ୍ତି-ବିଦ୍ୟାର ପ୍ରଗତି ଯୋଗୁଁ ବିଂଶ ଶତାବ୍ଦୀ ସୃଷ୍ଟିକଲା ବିରଳ ଇତିହାସ । ଏକପକ୍ଷରେ ସୃଜନଶୀଳତା, ଅନ୍ୟପକ୍ଷରେ ଧ୍ୱଂସର ତାଣ୍ଡବଲୀଳା । ବିଜ୍ଞାନ ମଣିଷକୁ ସମସ୍ତ ସୁଖ, ସ୍ୱାଚ୍ଛନ୍ଦ୍ୟ ଯୋଗାଇଦେବା ସତ୍ତ୍ୱେ ତା ମନକୁ ଆଚ୍ଛାଦିତ କରିଥିଲା ନିରାନନ୍ଦ କୁହେଳିକା । ସେ ଏକବିଂଶ ଶତାବ୍ଦୀକୁ ସ୍ୱାଗତ ଜଣାଇଥିଲା, କାଳେ ଏଇ ଶତାବ୍ଦୀ ତାର ଜୀବନ-ସରଣୀକୁ କରିବ ନିଷ୍କଣ୍ଟକ, ମଧୁମୟ ; କିନ୍ତୁ ଏଇ ଶତାବ୍ଦୀରେ ତା ସମ୍ମୁଖରେ ସଂକଟର ଶତଦ୍ୱାର ଉନ୍ମୁକ୍ତ । ମଣିଷ ବର୍ତ୍ତମାନ କିଂକର୍ତ୍ତବ୍ୟବିମୁଢ଼ । ମୁକ୍ତିପାଇଁ ସେ କେଉଁ ସଂକଟର ଦ୍ୱାରରୁଦ୍ଧ କରିବ ତାହା ତା'ପକ୍ଷେ ଅଚିନ୍ତ୍ୟ ।

ବିଂଶ ଶତାବ୍ଦୀରେ ନିର୍ଯାତିତ, ଦାସତ୍ୱ ବନ୍ଧନରୁ ମୁକ୍ତିପାଇଁ ମଣିଷ ନିଜ ଜୀବନକୁ ବିପନ୍ନକରି କରିଥିଲା ସଂଗ୍ରାମ ଏବଂ ସେଥିପାଇଁ ସେ ରୁଦ୍ଧକାରାର ଅନ୍ଧକାରରେ ସଢ଼ିଥିଲା, ଗୁଳି ଆଗରେ ଛାତି ପତେଇ ଥିଲା କିନ୍ତୁ ଏଇ କେଇଟା ଦଶନ୍ଧି ମଧରେ ସେଇ କଷ୍ଟଲବ୍ଧ ସ୍ୱାଧୀନତାକୁ ଅପହରଣ କରିବା ପାଇଁ ଷଡ଼ଯନ୍ତ୍ରର ବ୍ୟୂହ ରଚନା ହେଲାଣି । ତେବେ ତାର ମୁକ୍ତି କାହିଁ ? ମଣିଷର ଜୀବନ ସଂଗ୍ରାମମୟ । ପୁଣି ସ୍ୱାଧୀନତା ସଂଗ୍ରାମପାଇଁ ପ୍ରସ୍ତୁତ ହେବା ନିମନ୍ତେ ସେ ଆହ୍ୱାନ ଶୁଣିଲାଣି । ଏ ସଂଗ୍ରାମ ହେବ ବାହ୍ୟ ଓ ଗୃହ ଶତ୍ରୁଙ୍କ ବିରୋଧରେ । ଦେଶରେ ଏକ ନୂତନ ସାମନ୍ତବାଦୀ ଗୋଷ୍ଠୀ ଗଢ଼ିଉଠୁଛି, ତାକୁ ମୂଳୋତ୍ପାଟନ ନକଲେ ସ୍ୱାଧୀନ ଦେଶର ନାଗରିକ ହୋଇ ମଧ ସେ ରହିବ ଏକ ଶୋଷକ ଶାସକ-ଗୋଷ୍ଠୀଙ୍କ ଅଧୀନରେ । ଗଣତନ୍ତ୍ରରେ ନିର୍ବାଚନ ଏକ ପ୍ରହସନରେ ପରିଣତ ହୋଇଛି । ଅର୍ଥବଳ ଓ ବାହୁବଳରେ ଦେଶରେ ସୃଷ୍ଟି ହୋଇଥିବା ଏକ ସ୍ୱତନ୍ତ୍ର ଗୋଷ୍ଠୀ ଦେଶର ଶାସନକୁ ଅକ୍ତିଆର କରିବାକୁ ସର୍ବଦା ଆପ୍ରାଣ ଉଦ୍ୟମ କରି କୃତକାର୍ଯ୍ୟ ମଧ ହେଉଛନ୍ତି, ଫଳରେ ପବିତ୍ର ପୀଠ ଲୋକସଭା ଓ ବିଧାନସଭା ରଣାଙ୍ଗନରେ ପରିଣତ ହୋଇଛି । ଏହି ସଭାଗୃହରେ ଷଷ୍ଠ ଦଶକର ସେଇ ତାତ୍ତ୍ୱିକ ଆଲୋଚନା କାହିଁ ?

ଗତ ଅର୍ଦ୍ଧଶତାବ୍ଦୀ ମଧରେ ସାମାଜିକ ଜୀବନରେ ଏପରି ସଂକଟ ସୃଷ୍ଟି ହୋଇଛି ଯାହା ପାରିବାରିକ ତଥା ସାମାଜିକ ଜୀବନକୁ ଧ୍ୱସ୍ତବିଧ୍ୱସ୍ତ କରିଦେଲାଣି । ନାରୀଶିକ୍ଷାର ପ୍ରଗତି ସମାଜ ତଥା ଦେଶପକ୍ଷରେ ଏକ ଶୁଭସୂଚନା; କିନ୍ତୁ ନାରୀସମାଜ ଉପରେ ପାଶ୍ଚାତ୍ୟ ସଂସ୍କୃତିର ପ୍ରଭାବ ଆଦୌ ଶୁଭଙ୍କର ନୁହେଁ । ନାରୀ ବ୍ୟକ୍ତିଗତ ତଥା ସାମାଜିକ ସମ୍ମାନକୁ ଦୃଷ୍ଟିରେ ରଖି ସଂଯମତା ଅବଲମ୍ବନ କରିବା ନିତାନ୍ତ

ଆବଶ୍ୟକ । ସମାଜରେ ବଢ଼ିଥିବା ନାରୀ ନିର୍ଯାତନା ପାରମ୍ପରିକ ସମାଜର ବିରୋଧାଭାସ କହିବା ଅତ୍ୟୁକ୍ତି ନୁହେଁ । ପୁନଶ୍ଚ, ପରିବାର ଗଠନରେ ଯେଉଁ ପିତାମାତାଙ୍କ ଅବଦାନ ଅତୁଳନୀୟ, ସେମାନେ ଏବେ ପରିବାରରେ ଅବହେଳିତ, ନିର୍ଯାତିତ । ଜରାନିବାସ ଚିନ୍ତା ଭାରତୀୟ ସଂସ୍କୃତିର ପରପନ୍ଥୀ । ଯେଉଁ ସମାଜ ଦିନେ କହୁଥିଲା - 'ପିତରି ପ୍ରୀତିମାପନ୍ନେ ପ୍ରିୟନ୍ତେ ସର୍ବ ଦେବତାଃ' । ସେହି ସମାଜରେ ବୃଦ୍ଧ ପିତାମାତା ଏବେ ପରିବାରର ପରିଶିଷ୍ଟ । ରୋଜଗାର କରି ପୋଷୁଥିବା ଯାଏ ବାପାମା ଆଦୃତ । ଅଶକ୍ତ ହେଲେ ସେମାନେ ବୋଝ ହୁଅନ୍ତି । ଖର୍ଚ୍ଚ କମିବା ପାଇଁ ସେମାନଙ୍କ ମରଣ ଚିନ୍ତା କରାଯାଏ । ମଣିଷ ଏବେ ପେଟ ଓ ପ୍ରଜନନ ମଧ୍ୟରେ ନିଜକୁ ସୀମିତ ରଖି ବିବେକଶକ୍ତି ହରାଇ ବସିଲାଣି । ବିଶ୍ୱସମାଜ ଗଠନ ଦିଗରେ ଆମେ ଯେତେ ଆଗେଇ ଚାଲିଛେ, ତାକୁ ବାଧାଦେବା ପାଇଁ ମୌଳବାଦୀ, ଧର୍ମୋନ୍ମାଦ ଶକ୍ତିଗୁଡ଼ିକ ସକ୍ରିୟ ହୋଇ ଉଠୁଛନ୍ତି । ଆମର ଜ୍ଞାନ ପରିସର ବଢ଼ିଛି ସତ କିନ୍ତୁ ବୌଦ୍ଧିକତାର ଅବକ୍ଷୟ ଘଟିଛି ।

ସଂପ୍ରତି ସମାଜରେ ଧର୍ମୀୟ ସଂକଟ ଦେଖାଦେଇଛି । ଏବେ ଧର୍ମାନ୍ଧ ବ୍ୟକ୍ତିଗଣ ଧର୍ମକୁ କଦର୍ଥ କରି ସମାଜରେ ଦ୍ୱେଷ, ହିଂସା ପ୍ରକଟ କରିବାରେ ପଶ୍ଚାତ୍‌ପଦ ନୁହନ୍ତି । ଭାରତବର୍ଷର ଧର୍ମଭାବନା କୌଣସି ସଂକୀର୍ଣ୍ଣତାର ବଳୟ ମଧ୍ୟରେ ସୀମିତ ନୁହେଁ । ପ୍ରାଚୀନ କାଳରେ ମହର୍ଷି ମନୁ ଧର୍ମର ଯେଉଁ ସଂଜ୍ଞା ଦେଇଛନ୍ତି, ସେଥିରୁ ଭାରତୀୟ ଧର୍ମର ଉଦାରତା, ମହନୀୟତା ପ୍ରତିପାଦିତ ହୁଏ । ସେ ଧର୍ମର ଦଶଟି ଲକ୍ଷଣର ସୂଚନା ଦେଇଛନ୍ତି, ଯଥା : ସହିଷ୍ଣୁତା, କ୍ଷମା, ମନର ସଂଯମ, ଆଚୌର୍ଯ୍ୟ, ଦେହ ଓ ମନର ଶୁଦ୍ଧି, ଜ୍ଞାନେନ୍ଦ୍ରିୟ ଓ କର୍ମେନ୍ଦ୍ରିୟର ସଂଯମ, ଜ୍ଞାନ, ବିଦ୍ୟା, ସତ୍ୟ ଓ ଅକ୍ରୋଧ । ଯଦି ଏ ସମସ୍ତ ଗୁଣାବଳୀ କୌଣସି ବ୍ୟକ୍ତିଠାରେ ଦେଖାଯାଏ, ସେ ବାସ୍ତବରେ ଧାର୍ମିକ । ବିଶ୍ୱର ନୂତନ ଧର୍ମର ପ୍ରବର୍ତ୍ତକ ଓ ମାନବଧର୍ମର ପ୍ରଚାରକଙ୍କଠାରେ କୌଣସି ଏକ ସଦ୍‌ଗୁଣ ନିହିତ ଥିଲା; ଯାହାଫଳରେ ସେମାନେ ମାନବ ସମାଜରେ ପୂଜିତ । ପୁରୁଷୋତ୍ତମ ରାମଙ୍କ କର୍ତ୍ତବ୍ୟବୋଧ, ଆର୍ଯ୍ୟାବର୍ତ୍ତର ଶ୍ରେଷ୍ଠ ଜ୍ଞାନୀ କୃଷ୍ଣଙ୍କ ପରିସ୍ଥିତିକୁ ଆୟତ୍ତ କରିବା କୌଶଳ, ପ୍ରଭୁ ଯୀଶୁଙ୍କ ସମର୍ପଣ, ଇସଲାମ୍ ଧର୍ମର ପ୍ରବର୍ତ୍ତକ ମହମ୍ମଦଙ୍କ ଅତୁଟ ମନବଳ, ମହାପ୍ରଭୁ ଗୌରାଙ୍ଗଙ୍କ ପ୍ରେମ, ଭଗବାନ ବୁଦ୍ଧଙ୍କ ତ୍ୟାଗ, ଯେ କୌଣସି ଧର୍ମର ବ୍ୟକ୍ତି ଏ ଗୁଣଗୁଡ଼ିକ ଯଦି ଗ୍ରହଣ କରେ, ତେବେ ସେ ଜଣେ ଉପଯୁକ୍ତ ମଣିଷରେ ପରିଗଣିତ ହେବ । ତେବେ ସେଗୁଡ଼ିକ ଗ୍ରହଣ କଲେ କ୍ଷତି କ'ଣ ? ଏଗୁଡ଼ିକ ଶିକ୍ଷାକଲେ ବ୍ୟକ୍ତି ବ୍ୟକ୍ତି ମଧ୍ୟରେ, ଗୋଷ୍ଠୀ ଗୋଷ୍ଠୀ ମଧ୍ୟରେ ଓ ଦେଶ ଦେଶ ମଧ୍ୟରେ ଥିବା ବିଦ୍ୱେଷ ତଥା ଧର୍ମାନ୍ଧତା ଦୂର କରାଯାଇ ପରସ୍ପରର ପରସ୍ପର ପ୍ରତି ସ୍ନେହ ସୌହାର୍ଦ୍ଦ୍ୟ ବୃଦ୍ଧି କରାଯାଇପାରିବ ।

ମଣିଷର ବିବେକ ବର୍ତ୍ତମାନ ସଇତାନ ଦ୍ୱାର ପରିଚାଳିତ । ତାର ଇଙ୍ଗିତରେ ସେ କୌଣସି କୁକର୍ମ କରିବାକୁ କୁଣ୍ଠିତ ନୁହେଁ । କେବଳ ଦୃଢ଼ ମନୋବଳ ଦ୍ୱାରା ହିଁ ସଇତାନକୁ ପରାହତ କରାଯାଇପାରେ ।

ଦିନେ ପ୍ରଭୁ ଯୀଶୁ ସଇତାନ ଦ୍ୱାରା ପରୀକ୍ଷାର ସମ୍ମୁଖୀନ ହୋଇଥିଲେ; କିନ୍ତୁ ତାଙ୍କର ମନର ଦୃଢ଼ତା ଯୋଗୁଁ ସେ ପରାଭବ ସ୍ୱୀକାର କରିଥିଲା । ଏବେ ମଣିଷ ନୀତି ଓ ନୈତିକତାକୁ ପ୍ରାଚୀନତାର ବଳୟ ମଧ୍ୟକୁ ଠେଲିଦେଇଛି । ଯେ କୌଣସି ଉପାୟରେ ଧନ ଅର୍ଜନ କରି ରାତାରାତି ବଡ଼ଲୋକ ହେବାର ଅଭିଳାଷ ବଢ଼ିଛି । ଏହାର ଶେଷ ପରିଣତି କ'ଣ, ସେ ବୁଝେନା । ମଣିଷର କୁକର୍ମର ଶେଷ ପରିଣତି ଉପରେ ଅତୀତର ବହୁ ଦୃଷ୍ଟାନ୍ତ ଇତିହାସ ପୃଷ୍ଠାରେ ସାଇତା ହୋଇ ରହିଛି । ଦିନେ ଦସ୍ୟୁ ରତ୍ନାକର ପରିବାରଠାରୁ ଉଚିତ ଶିକ୍ଷା ପାଇ ଜୀବନର ମାର୍ଗ ପରିବର୍ତ୍ତନ କଲା । ଦିଗ୍‌ବିଜୟୀ ଆଲେକ୍‌ଜାଣ୍ଡର ବିଶ୍ୱବିଜୟ ପରେ ଏପରି ମ୍ରିୟମାଣ ହେଲେ ଯେ ସେ ଆତ୍ମୀୟ ସ୍ୱଜନଙ୍କୁ କହିଗଲେ ମୃତ୍ୟୁପରେ କବରରେ ତାଙ୍କ ହାତ ଦୁଇଟି ଉପରକୁ ଟେକିରଖିବେ ଫଳରେ ବିଶ୍ୱବାସୀ ଜାଣିବେ ସେ ବିଶ୍ୱବିଜୟୀ ବୀର ଗଲାବେଳେ ସଙ୍ଗରେ କିଛି ନେଇନାହାନ୍ତି । ଦୁର୍ନୀତିଗ୍ରସ୍ତ ମଣିଷମାନଙ୍କ ପ୍ରତି ଏ ସବୁ ନୀତିଶିକ୍ଷା, ଚେତାବନୀ ନୁହେ କି ? ମଣିଷ ତାର ଦୁର୍ଲଭ ଜନ୍ମକୁ ସାର୍ଥକ କରିବାପାଇଁ ନିଜକୁ ସତ୍‌କର୍ମରେ ନିୟୋଜିତ କରିବା ଉଚିତ ।

ଏକବିଂଶ ଶତାବ୍ଦୀର ମଣିଷ ସମସ୍ତ ପ୍ରକାରର ସୁଖ ସୁବିଧା ଭୋଗକରି ମଧ୍ୟ ତା ମନରେ ଶାନ୍ତିନାହିଁ । ସେ ଆଶଙ୍କା କଲାଣି ଯେ ସେ କୌଣସି ମୁହୂର୍ତ୍ତରେ ପ୍ରକୃତିର ତାଣ୍ଡବଲୀଳାର ଶିକାର ହେବ । ମଣିଷର ସୃଷ୍ଟି ଦିନରୁ ମଣିଷ ଓ ପ୍ରକୃତି ମଧ୍ୟରେ ସଂଗ୍ରାମ ଚାଲି ଆସିଛି । ବିଜ୍ଞାନ ଓ ପ୍ରଯୁକ୍ତିବିଦ୍ୟାର ଅଗ୍ରଗତିରେ ସେ ପ୍ରକୃତିକୁ ହେୟ ମନେକରି ବିବେଚନା କଲା ଯେ ସେ ସୃଷ୍ଟିର ସର୍ବେସର୍ବା । ପ୍ରକୃତି ଏବେ ପ୍ରତିଶୋଧପରାୟଣା ହୋଇ ତାର ସର୍ବଗ୍ରାସୀ, ବିକଟାଳ ରୂପ ପ୍ରଦର୍ଶନ କଲାଣି । ମଣିଷର ଗର୍ବ, ଅଭିମାନ, ଦାମ୍ଭିକତା ନିମିଷକ ମଧ୍ୟରେ ଚୂର୍ଣ୍ଣବିଚୂର୍ଣ୍ଣ ହେବାର ସମ୍ଭାବନା ଦେଖାଗଲାଣି । ଭଗବାନଙ୍କ ସୃଷ୍ଟିର ଯଦି ସେ ରକ୍ଷଣାବେକ୍ଷଣ ନକରେ ତାର ବିଲୟ ସୁନିଶ୍ଚିତ ।

ବିଂଶ ଶତାବ୍ଦୀର ଶେଷ ଦଶନ୍ଧିରୁ ମଣିଷ ଶିକ୍ଷାକ୍ଷେତ୍ରରେ ଏକ ଚୌମୁହାଣୀ ଛକ ଉପରେ ଛିଡ଼ା ହୋଇଛି । ଭବିଷ୍ୟତ ବଂଶଧରକୁ କି ଧରଣର ଶିକ୍ଷା ଦିଆଯିବ, ତା ଏବେ ଦ୍ୱନ୍ଦର ପରିସରଭୁକ୍ତ । ପ୍ରତ୍ୟେକ କ୍ଷେତ୍ରରେ ନୈତିକତାର ଅବକ୍ଷୟକୁ ଦୃଷ୍ଟିରେ ରଖି ମୂଲ୍ୟବୋଧ ଶିକ୍ଷା ଦେବାପାଇଁ ବିଭିନ୍ନ ସ୍ତରରୁ ପ୍ରସ୍ତାବମାନ ଉପସ୍ଥାପନା କରାଯାଉଛି, କାରଣ ପ୍ରଯୁକ୍ତିବିଦ୍ୟା ଆମର ପାରମ୍ପରିକ ଚିନ୍ତାଧାରାକୁ ସମ୍ପୂର୍ଣ୍ଣ ରୂପେ ଧ୍ୱଂସ କରିଦେଲାଣି । ଦେଶରେ ଏବେ ଏପରି ଶିକ୍ଷାର ପ୍ରବର୍ତ୍ତନ କରିବା ଆବଶ୍ୟକତା ରହିଛି, ଯେଉଁ ଶିକ୍ଷା ବ୍ୟକ୍ତିକୁ ସଂକୀର୍ଣ୍ଣତା ବଳୟର ଊର୍ଦ୍ଧ୍ୱରେ ରଖି ପରସ୍ପର ମଧ୍ୟରେ ସମ୍ପର୍କକୁ ସୁଦୃଢ଼ କରିବ ଏବଂ ସ୍ରଷ୍ଟାଙ୍କ ସୃଷ୍ଟିକୁ ଧ୍ୱଂସମୁଖରୁ ରକ୍ଷା କରିବାପାଇଁ ସଚେତନ ହେବ । ଆମକୁ ମହାନ ଚିନ୍ତାନାୟକ ମହାତ୍ମାଗାନ୍ଧି, ଶ୍ରୀ ଅରବିନ୍ଦଙ୍କ ଶିକ୍ଷାଦର୍ଶନକୁ ଗଭୀରଭାବେ ଅନୁଧ୍ୟାନକରି ସେମାନଙ୍କ ପ୍ରଦର୍ଶିତ ଶିକ୍ଷାତତ୍ତ୍ୱକୁ ପାଠ୍ୟକ୍ରମରେ ଅନ୍ତର୍ଭୁକ୍ତ କରିବା ସମୟ ଆସିଛି । ପୁନଶ୍ଚ, ଉଚ୍ଚଶିକ୍ଷା କ୍ଷେତ୍ରରେ

ଅନ୍ୟ ଏକ ସଂକଟ ପରିଦୃଷ୍ଟ ହୁଏ । ଯୁକ୍ତଦୁଇ ଶିକ୍ଷା ପରେ ଅଧ୍ୟୟନ ପାଇଁ ଉଭୟ ଛାତ୍ର ଓ ଅଭିଭାବକ ବୀତସ୍ପୃହ । ପରିସଂଖ୍ୟାନରୁ ଜଣାଯାଏ ଯେ ବିଶ୍ୱବିଦ୍ୟାଳୟଗୁଡ଼ିକର ବିଭିନ୍ନ ବିଭାଗରେ ଶତକଡ଼ା ପଚାଶଭାଗ ସ୍ଥାନ ଖାଲିରହିଛି । ଏଣୁ ଯୁଗୋପଯୋଗୀ ଶିକ୍ଷାର ପ୍ରଚଳନ ପାଇଁ ପ୍ରଚଳିତ ପାଠ୍ୟକ୍ରମର ପୁନର୍ବିନ୍ୟାସ ଅତି ଜରୁରୀ ମନେହୁଏ ।

ଏତଦ୍‌ବ୍ୟତୀତ, ଜନସଂଖ୍ୟା ବିସ୍ଫୋରଣ, ଏକ ଦିଗରେ ଜୀବନ ଧରଣର ମାନବୃଦ୍ଧି ବେଳେ ଅନ୍ୟଦିଗରେ ଲକ୍ଷ ଲକ୍ଷ ବୁଭୁକ୍ଷୁ ଜନତାର ଅନାହାର ମୃତ୍ୟୁ, ପରିମଳ ସମସ୍ୟାଦି ଏହି ଶତାବ୍ଦୀର ଉତ୍କଟ ସଂକଟ ରୂପେ ଛିଡ଼ା ହେଲାଣି । ଏ ସଂକଟଗୁଡ଼ିକର ଦୂରୀକରଣ ପାଇଁ ଯୋଜନାବଦ୍ଧ କାର୍ଯ୍ୟକ୍ରମ ଆବଶ୍ୟକ । ସାଧାରଣ ଜନତାଙ୍କୁ ଏ ସମସ୍ୟାଗୁଡ଼ିକ ଉପରେ ସଚେତନ କରାଇ ସରକାରଙ୍କ ସହ ସେମାନଙ୍କ ସକ୍ରିୟ ସହଯୋଗ ଏକାନ୍ତ କାମ୍ୟ ।



(ସମାଜ, ଅକ୍ଟୋବର ୨୯, ୨୦୦୨ରେ ପ୍ରକାଶିତ)

# ବାଗ୍‌ଦେବୀଙ୍କ ଆଧିପତ୍ୟ

ବିଗତ ଶତାବ୍ଦୀର ଅଧିଷ୍ଠାତ୍ରୀ ଦେବୀ ଥିଲେ ଧନଦାତ୍ରୀ, ସର୍ବ ସମ୍ପଦ - ଦାୟିନୀ ମହାଲକ୍ଷ୍ମୀ; କିନ୍ତୁ ଆଗାମୀ ଶତାବ୍ଦୀରେ ତାଙ୍କ ସ୍ଥାନକୁ ଅଧିକାର କରିବେ ବିଦ୍ୟାବୁଦ୍ଧି ପ୍ରଦାୟିନୀ ବିଦ୍ୟାଦାତ୍ରୀ ବାଗ୍‌ଦେବୀ। ଅର୍ଥନୈତିକ ବିପ୍ଳବ କ୍ଷେତ୍ରରେ ନୂତନ ଶତାବ୍ଦୀ ଆଣିବ ଏକ ଅଭୂତପୂର୍ବ ପରିବର୍ତ୍ତନ। ବିଂଶ ଶତାବ୍ଦୀରେ ପୁଞ୍ଜିପତି ଗୋଷ୍ଠୀ କଳ କାରଖାନା ତଥା ଖଣିଖାଦାନର ମାଲିକ ହୋଇ ସାମାଜିକ ତଥା ରାଜନୈତିକ କ୍ଷେତ୍ରରେ ସେମାନଙ୍କ ପ୍ରାଧାନ୍ୟ ବିସ୍ତାର କରୁଥିଲେ। ଆଗାମୀ ଶତାବ୍ଦୀରେ ଏହି ଗୋଷ୍ଠୀ ବୁଦ୍ଧିଜୀବୀମାନଙ୍କ ବଶ୍ୟତା ସ୍ୱୀକାର କରିବାକୁ ବାଧ୍ୟ ହେବେ। ବୁଦ୍ଧିଜୀବୀମାନଙ୍କ ନିର୍ଦ୍ଦେଶାନୁଯାୟୀ ସେମାନଙ୍କ ପୁଞ୍ଜି ବିନିଯୋଗ କରାଯିବ। ବାଣିଜ୍ୟ ବ୍ୟବସାୟ କ୍ଷେତ୍ରରେ ଏକ ନିର୍ଦ୍ଦିଷ୍ଟ ଗୋଷ୍ଠୀର ମାଲିକାନା ରହିବ ନାହିଁ। ଫଳରେ ଏକ ନୂତନ ବୈଶ୍ୟ ସମାଜର ଅଭ୍ୟୁଦୟ ହେବ। ଏହି ନବ୍ୟ ଗୋଷ୍ଠୀ ଜନ୍ମରେ ବୈଶ୍ୟ ନହେଲେ ବି ବୈଶ୍ୟଙ୍କ ଠାରୁ ବାଣିଜ୍ୟ ବ୍ୟବସାୟରେ ଟପିଯିବେ। ବର୍ତ୍ତମାନ ସମ୍ବାଦ ପରିବେଷଣ ବ୍ୟବସ୍ଥା ତଥା ଓ୍ୱିପ୍ରୋ ଓ ଇନ୍‌ଫୋସିସ୍ କମ୍ପାନି ଗୁଡ଼ିକର ଅଭ୍ୟୁଦୟରୁ ଏ ସୂଚନା ମିଳେ।

ବିଂଶ ଶତାବ୍ଦୀରେ ସାମ୍ୟବାଦୀ ଆନ୍ଦୋଳନ ଏକ ଭିନ୍ନ ରୂପ ନେଲା। ସ୍ୱାଧୀନୋତ୍ତର ଭାରତବର୍ଷରେ ସାମ୍ୟବାଦୀ ଚିନ୍ତାଧାରାର ବ୍ୟକ୍ତିବିଶେଷ ଶାସନ ଗାଦିକୁ ଆସି ଦେଶର ଅର୍ଥନୀତିକୁ ତଦନୁଯାୟୀ ନିୟନ୍ତ୍ରଣ କଲେ। ସେମାନେ ରାଷ୍ଟ୍ରର ଅର୍ଥନୀତିକୁ ନିୟନ୍ତ୍ରଣ କରିବା ସହ ଘରୋଇ ଅର୍ଥନୀତିକୁ ମଧ୍ୟ ନିୟନ୍ତ୍ରଣ କଲେ। ସେମାନଙ୍କ ପରିକଳ୍ପନା ଥିଲା ଯେ ଖାଦ୍ୟଦ୍ରବ୍ୟ ତଥା କୃଷି ଓ କୁଟୀରଶିଳ୍ପ ସାମଗ୍ରୀ ବିନାମୂଲ୍ୟରେ ବା ରିହାତି ଦରରେ ବଣ୍ଟନ କଲେ ଦେଶର ଅର୍ଥନୈତିକ ପ୍ରଗତି ଘଟିବ; କିନ୍ତୁ ଫଳ ଠିକ୍ ଓଲଟା ହେଲା। ସାମ୍ୟବାଦୀ ଆଭିମୁଖ୍ୟର ପରୀକ୍ଷା ନିରୀକ୍ଷାର ବିଫଳତା ଯୋଗୁଁ ଦେଶ ଦେବାଳିଆ ହେଲା ଏବଂ ସେଇ ବୈଶ୍ୟ ସଂସ୍କୃତି ହିଁ ଶ୍ରେଷ୍ଠ ବୋଲି ବିବେଚନା କରାଗଲା। ଗତ ଅର୍ଦ୍ଧ ଶତାବ୍ଦୀ ମଧ୍ୟରେ ସିଙ୍ଗାପୁର, କୋରିଆ ଓ ହଂକଂ ପ୍ରଭୃତି କେତେକ ରାଜ୍ୟର ଅଭୂତପୂର୍ବ ଅର୍ଥନୈତିକ ପ୍ରଗତି ଘଟିଛି।

ଚଳିତ ଶତାବ୍ଦୀର ଶେଷ ଦଶକରେ ବିଶ୍ୱର ବୃହତ୍ ଶିଳ୍ପସଂସ୍ଥା ଯଥା ଜେନେରାଲ ମୋଟର୍ସ ଓ ଏକ୍ସନ କମ୍ପାନୀଗୁଡ଼ିକର ଅଧଃପତନ ଘଟିଛି; ଅଥଚ ମାଇକ୍ରୋସଫ୍‌ଟ କମ୍ପାନୀଗୁଡ଼ିକ ଅର୍ଥନୈତିକ କ୍ଷେତ୍ରରେ ଦ୍ରୁତ ଗତିରେ ଆଗେଇ ଚାଲିଛନ୍ତି। ବିଲ୍‌ଗେଟ୍‌ସ ବିଶ୍ୱର ସର୍ବଶ୍ରେଷ୍ଠ ଧନୀ ବୋଲି ବିବେଚିତ

ହୁଅନ୍ତି ଯଦିଓ ସେ କୌଣସି କଳକାରଖାନା ବା ଖଣିଖାଦାନର ମାଲିକ ନୁହନ୍ତି ବା ବଜାରରେ ତାଙ୍କର କୌଣସି ଉତ୍ପାଦିତ ଦ୍ରବ୍ୟ ବିକ୍ରୟ ହୁଏନା । ତାଙ୍କର ମୁଖ୍ୟ କାର୍ଯ୍ୟ ହେଲା ଅନ୍ୟ କମ୍ପାନୀର ପ୍ରସ୍ତୁତି କମ୍ପ୍ୟୁଟରକୁ କେତେକ ନିର୍ଦ୍ଦେଶାବଳୀ ଯୋଗାଇବା । କେବଳ ଜ୍ଞାନ କୌଶଳ ପ୍ରୟୋଗଦ୍ୱାରା ସେ ବିପୁଳ ଅର୍ଥର ଅଧିକାରୀ ହୋଇଛନ୍ତି । ପ୍ରାକୃତିକ ପୁଞ୍ଜି ଉପରେ ମାନବୀୟ ପୁଞ୍ଜିର ବିଜୟ ବୋଲି ଏହାକୁ କୁହାଯାଇପାରେ । ଆଜି ଦାର୍ଶନିକ କାର୍ଲମାକ୍ସ ବଞ୍ଚିଥିଲେ ଏସବୁ ଦେଖି ଆଶ୍ଚର୍ଯ୍ୟାନ୍ୱିତ ହୋଇଥାନ୍ତେ ।ତାଙ୍କ ରଚିତ ଦାଶ୍ କ୍ୟାପିଟାଲ୍ ଏକ ବୌଦ୍ଧିକ ଶକ୍ତିର ପରିଚାୟକ ।

ସଂପ୍ରତି ସମାଜର ଧନାଢ଼୍ୟ ଗୋଷ୍ଠୀ ସେମାନଙ୍କ ପୁଞ୍ଜି ଲଗାଣପାଇଁ ବୌଦ୍ଧିକ ଶକ୍ତିର ଅନୁସନ୍ଧାନରେ ତତ୍ପର ହୋଇଉଠିଛନ୍ତି । ଏବେ ମାଇକ୍ରୋସଫ୍ଟରେ ନିଯୁକ୍ତ ବ୍ୟକ୍ତି ଧନୀ ଶ୍ରେଣୀର ଅନ୍ତର୍ଭୁକ୍ତ । ବିଗତ ଶତାବ୍ଦୀର ଧନପତି ଆମେରିକାର ଷ୍ଟିଲ୍ ମାଲିକ ଏଣ୍ଡ୍ରୁ କାର୍ଣ୍ଣେଜୀଙ୍କ ଆଉ ସତ୍ତା ନାହିଁ । ଭାରତବର୍ଷରେ ଷ୍ଟିଲ ଅଥରିଟିର ବଜାର ମୂଲ୍ୟ ଚାରି ହଜାର ପାଞ୍ଚଶହ କୋଟି ହେଲାବେଳକୁ ଇନ୍‌ଫୋସିସ୍‌ର ବଜାର ମୂଲ୍ୟ ସତଚାଳିଶ ହଜାର କୋଟି । ସମସ୍ତ ନୂତନ ଉଦ୍ଭାବନ ଯୁବଗୋଷ୍ଠୀର ବୌଦ୍ଧିକଶକ୍ତିରୁ ନିଃସୃତ ।

ଆଜି ପଣ୍ଡିତ ନେହେରୁ ଥିଲେ ଯଦିଓ ସାଧାରଣ ଉଦ୍ୟୋଗଗୁଡ଼ିକ (Public Sectors)ର ପତନ ଦେଖି ମ୍ରିୟମାଣ ହୋଇଥାନ୍ତେ; କିନ୍ତୁ ଏହି ସୂଚନା ଯୁଗରେ ଏକ ନବ୍ୟ ବ୍ରାହ୍ମଣଗୋଷ୍ଠୀର ସୃଷ୍ଟିଦେଖି ନିଶ୍ଚୟ ଆଚମ୍ବିତ ହୋଇଥାନ୍ତେ । ଦିନଥିଲା, ବୌଦ୍ଧିକ ଗୋଷ୍ଠୀ ପୁଞ୍ଜିପତିଙ୍କ ପଶ୍ଚାତ୍ ଅନୁଧାବନ କରୁଥିଲେ; କିନ୍ତୁ ଏବେ ସେମାନେ ନିଜର ପୁଞ୍ଜି ବିନିଯୋଗ ପାଇଁ ବୁଦ୍ଧିଜୀବୀପଛରେ ଧାଡ଼ି ବାନ୍ଧିଛନ୍ତି । - ବିଦ୍ୟାର ଅଧିଷ୍ଠାତ୍ରୀ ଦେବୀ ଏବେ ଅଧିକ କ୍ରିୟାଶୀଳ ଓ ଶକ୍ତିଶାଳୀ । ଲକ୍ଷ୍ମୀ ପ୍ରତିଯୋଗିତାରେ ହାର ମାନିଛନ୍ତି, ବାଗ୍‌ଦେବୀଙ୍କ ଆଧିପତ୍ୟ ବଢ଼ିଛି ।



(ସମାଜ, ୨୪ ଡ଼ିସେମ୍ବର, ୨୦୦୦ରେ ପ୍ରକାଶିତ)

# ଗଣତନ୍ତ୍ରରେ ଉତ୍ତରଦାୟିତ୍ୱ

ଏକ ଗଣତନ୍ତ୍ର ଦେଶରେ ଜନପ୍ରତିନିଧି ନିଜର ଉତ୍ତରଦାୟିତ୍ୱ ଉପଲବ୍ଧି କରିବା ଏବଂ କର୍ତ୍ତବ୍ୟ ସମ୍ପାଦନ ପାଇଁ ନିଜକୁ ନିୟୋଜିତ କରିବା, ଗଣତନ୍ତ୍ର ପ୍ରଗତିର ଶୁଭସୂଚନା ଅଟେ । ଆମ ଦେଶର ଗଣତାନ୍ତ୍ରିକ ରୀତିନୀତି ଉପରେ ଏହାର ଘୋର ଅଭାବ ପରିଲକ୍ଷିତ ହୁଏ । ଜନ ପ୍ରତିନିଧିଗଣ କେବଳ ନିର୍ବାଚନ ସମୟରେ ନିଜ ଦାୟିତ୍ୱବୋଧ ଉପରେ ବଖାଣି ଭୋଟରମାନଙ୍କୁ ପ୍ରଭାବିତ କରିବାପାଇଁ ଉଦ୍ୟମ କରନ୍ତି । ବ୍ୟବସ୍ଥାପକ ସଭା, ଶାସନ ବିଭାଗ, ବିଚାର ବିଭାଗରେ ଏହି ଉତ୍ତରଦାୟିତ୍ୱକୁ କାର୍ଯ୍ୟକାରୀ କରିବାରେ ସମନ୍ୱୟର ଅଭାବ ପରିଦୃଷ୍ଟ ହୁଏ । ଦେଶର ଦୁର୍ନୀତି, ଅର୍ଥବଳ, ରାଜନୈତିକ ଅପରାଧ, ଗଣତାନ୍ତ୍ରିକ ସଂସ୍ଥାଗୁଡ଼ିକୁ ଦୁର୍ବଳ କରୁଛି । ଏତଦ୍‌ବ୍ୟତୀତ ଲିଙ୍ଗ, ଗୋଷ୍ଠୀ, ଧର୍ମ, ଅର୍ଥନୈତିକ ବୈଷମ୍ୟତା ନେଇ ସୃଷ୍ଟି ହେଉଥିବା କନ୍ଦଳ ଗଣତନ୍ତ୍ରର ମେରୁଦଣ୍ଡକୁ ଦୋହଲାଇ ଦେଉଛି । ପୁନଶ୍ଚ କ୍ଷମତାର କେନ୍ଦ୍ରୀକରଣ ଗଣତନ୍ତ୍ରର କଣ୍ଠରୋଧ କରୁଛି । ଜନପ୍ରତିନିଧିଙ୍କୁ ସେମାନଙ୍କ ଉତ୍ତରଦାୟିତ୍ୱ ଉପରେ ସଚେତନ କରାଇବା, ବ୍ୟବସ୍ଥାପକ ସଭା, ଶାସନ ଓ ବିଚାର ବିଭାଗର କର୍ତ୍ତବ୍ୟ ଏବଂ ଦାୟିତ୍ୱ ଅଟେ; କିନ୍ତୁ ଏ ଦିଗରେ ବ୍ୟବସ୍ଥାପକ ସଭା ତଥା ଶାସନ ବିଭାଗ ସଂପୂର୍ଣ୍ଣଭାବେ ଉଦାସୀନ । କେବଳ ବିଚାର ବିଭାଗର କେତେକ କ୍ଷେତ୍ରରେ ହସ୍ତକ୍ଷେପକୁ ପ୍ରତିରୋଧ କରାଯାଉଛି ଏବଂ ସ୍ୱାର୍ଥ ସାଧନ ପାଇଁ ଆଇନକୁ ପରିବର୍ତ୍ତନ କରି ରକ୍ଷାକବଚ ସୃଷ୍ଟି କରିବାର ବ୍ୟବସ୍ଥା ହେଉଛି । ଯେତେବେଳେ ମୂଲ୍ୟବୋଧ ଭିତ୍ତିକ ଜୀବନଯାପନ କଥା ଚିନ୍ତା କରାଯାଉଛି, ସେତେବେଳେ ଗଣତାନ୍ତ୍ରିକ ଅଧିକାର ମାନବ ବିକାଶର ଏକ ଅବିଚ୍ଛେଦ୍ୟ ଅଙ୍ଗ ହେବା ଉଚିତ । କାରଣ, କେବଳ ଗଣତନ୍ତ୍ର ହିଁ ନାଗରିକମାନଙ୍କୁ ସେମାନଙ୍କ ଅଧିକାରକୁ ସାବ୍ୟସ୍ତ କରିବାପାଇଁ ପ୍ରୋତ୍ସାହନ ଦେଇଥାଏ । କିନ୍ତୁ ମାନବ ବିକାଶ ଓ ଗଣତାନ୍ତ୍ରିକ ଅନୁଶୀଳନ ମଧ୍ୟରେ ସମ୍ପର୍କ ଶୀର୍ଣ୍ଣ । ସଂପ୍ରତି ଦେଶର ଗଣତନ୍ତ୍ର ନାଗରିକମାନଙ୍କୁ ଉତ୍କୃଷ୍ଟ ଜୀବନଯାପନର ପନ୍ଥା ନିର୍ଣ୍ଣୟ କରିବାକୁ ବ୍ୟର୍ଥ ହୋଇଛି । ପ୍ରଶ୍ନଉଠେ, ଗଣତନ୍ତ୍ର କାହିଁକି ଆର୍ଥିକ ସଫଳତା ଦେବାରେ ବ୍ୟର୍ଥ ହୁଏ । ଜାତିସଂଘର ବିକାଶ କାର୍ଯ୍ୟକ୍ରମରେ ମାନବ ବିକାଶ ସମ୍ବନ୍ଧରେ କୁହାଯାଇଛି ଯେ ଗଣତାନ୍ତ୍ରିକ ଅଧିକାର ବଳରେ ବ୍ୟକ୍ତି ଶିକ୍ଷା ଓ ସ୍ୱାସ୍ଥ୍ୟାଦି ବିକାଶପାଇଁ ଦାବି ଉପସ୍ଥାପନ କରିବାରେ ସମର୍ଥ ହେବ ଏବଂ ଅପରପକ୍ଷରେ, ଶିକ୍ଷା ବ୍ୟକ୍ତିର ସାମାଜିକ ଓ ଆର୍ଥିକ ଅଭିବୃଦ୍ଧି ଦିଗରେ ପ୍ରାଧାନ୍ୟ ଦେବାପାଇଁ ସାମର୍ଥ୍ୟ ବୃଦ୍ଧି କରିବ । କିନ୍ତୁ ଦେଶରେ ଗଣତନ୍ତ୍ର ପ୍ରତିଷ୍ଠା ହେବାର ଅର୍ଦ୍ଧଶତାବ୍ଦୀ ଅତିବାହିତ ହୋଇଯାଇଥିଲେ ହେଁ ସରକାର ଏ ଦିଗପ୍ରତି ସଂପୂର୍ଣ୍ଣ ବୀତସ୍ପୃହ ।

ଆମ ଦେଶରେ ନିର୍ବାଚନ ଜିଣିବା ଓ ସରକାରଙ୍କର କୌଣସି ପଦ ପଦବୀରେ ଅଧିଷ୍ଠିତ ହେବାପାଇଁ ପ୍ରବଳ ପ୍ରତିଯୋଗିତା ଚାଲିଛି । ଉଦ୍ଦେଶ୍ୟ 'ଜନସେବା' ପାଇଁ ନୁହେଁ, 'ସ୍ୱୟଂସେବା' କରି ଭବିଷ୍ୟତକୁ ମଜଭୁତ କରିବା । ମନ୍ତ୍ରୀ ପଦଟିଏ ମିଳିଗଲେ ଉତ୍ତର ସାତପୁରୁଷ ଯାଏ ତାଙ୍କ ନାମ କୀର୍ତ୍ତନ କରି ଉଦ୍ଧାର ପାଇବେ । କେବଳ ସେତିକି ନୁହେଁ, ପୂର୍ବ ସାତପୁରୁଷ ମଧ୍ୟ ସେମାନେ ଯାହା ହୋଇଥାଆନ୍ତୁ ନା କାହିଁକି ଇତିହାସର ଗୌରବୋଜ୍ଜ୍ୱଳ ପୃଷ୍ଠା ମଣ୍ଡନ କରିବେ । ଦେଶ, ରାଜ୍ୟ, ଜିଲ୍ଲା ସ୍ତରରେ ସେମାନଙ୍କ ଜନ୍ମ ତଥା ଶ୍ରାଦ୍ଧବାର୍ଷିକୀ ପାଳନ କରାଯିବ । ରାଜରାସ୍ତା, ସରକାରୀ, ବେସରକାରୀ ଅନୁଷ୍ଠାନ ସେମାନଙ୍କ ନାମରେ ନାମିତ କରି, ଦେଶରେ ସେମାନଙ୍କୁ ଚିର ଅମର କରି ରଖିବାପାଇଁ ସମସ୍ତ ପ୍ରକାର ପଦକ୍ଷେପ ନିଆଯିବ । ସେ ହେବେ ସାତପୁରୁଷର ଉଦ୍ଧାରକ ଭଗୀରଥ । ଏ ବି ଏକ ଜନସେବା । ପରିବାରର ଲୋକେ ତ ଏ ଦେଶର, ଏ ସମାଜର । ଏଥିପାଇଁ ନିର୍ବାଚନରେ ଜୟଯୁକ୍ତ ହେବାପାଇଁ କଳାଧନର ବହୁଳ କାରବାର ହୁଏ, ଲୋକଙ୍କୁ ମିଥ୍ୟା ପ୍ରତିଶ୍ରୁତି ଦିଆଯାଏ ଏବଂ ଜିଣିଲେ, ମନ୍ତ୍ରୀ ହେବାପାଇଁ ଘୋଡ଼ା ବେପାର ଚାଲେ । ଆବଶ୍ୟକ ସ୍ଥଳେ ଦଳବଦଳ କରିବାପାଇଁ କୌଣସି ସଂକୋଚ ନଥାଏ । ଏପରି ଜନପ୍ରତିନିଧି ଜନତାଙ୍କ ନିକଟରେ କି ଉତ୍ତରଦାୟୀ ରହିବେ ?

ସ୍ୱାଧୀନତାର ଦ୍ୱିତୀୟ ଦଶନ୍ଧି ପରଠାରୁ ରାଜନୀତିରେ ଏ ଖେଳ ଚାଲିଛି । ସାଧାରଣ ଜନତାର ଆଖିରେ ଧୂଳି ପକେଇ ଗୋପନରେ କେତେ ପ୍ରକାର କାରବାର ଚାଲେ, ବିଦେଶୀ ବ୍ୟାଙ୍କରେ କୋଟି କୋଟି ଟଙ୍କା ଜମାହୁଏ; କିନ୍ତୁ ଦେଶର ଏହି ପ୍ରଥମ ଶ୍ରେଣୀର ନାଗରିକଗଣ ବିରାଡ଼ି ବୈଷ୍ଣବ ସାଜି, ସଭାସମିତିରେ ନୀତିବାଣି ଶୁଣାନ୍ତି - ସତେକି ସେମାନେ ଖାଣ୍ଟି ତୁଳସୀ । ସେମାନଙ୍କ ଗୁପ୍ତ କାରବାରକୁ କେବେ କେମିତି ପଦାକୁ ଆଣନ୍ତି ସେମାନଙ୍କ ସମଧର୍ମୀ ବିରୋଧୀ ଲୋକ, ଯେଉଁମାନେ କି ଏ ସୁବିଧା ସୁଯୋଗ ପାଇବାରୁ ବଞ୍ଚିତ ହୋଇଥାନ୍ତି । ଏଇମାନେ ସେପରି କିଛି ସୁଯୋଗ ପାଇଗଲେ ନୀରବ ରହନ୍ତି ବା କେତେକସ୍ଥଳରେ ଯାହା ବିରୋଧରେ କହୁଥିଲେ ସେମାନଙ୍କ ପ୍ରଶଂସାରେ ଶତମୁଖ ହୋଇ ଉଠନ୍ତି । କମିଶନ ବସାଇବା, କୋର୍ଟ କଚେରୀରେ ମାଲି ମକଦ୍ଦମା କରିବା ଏସବୁ ଲୋକ ଦେଖାଣିଆ । ଜନମତକୁ ସାମୟିକଭାବେ ପ୍ରଶମିତ କରିବାକୁ ଏ ଏକ କୌଶଳ । ଏପରି ବ୍ୟକ୍ତି ଭୋଟରମାନଙ୍କ ନିକଟରେ ଉତ୍ତରଦାୟୀ ରହିବେ କି ? ପଦପଦବୀରେ ଥିବାବେଳେ ଯଦି କୌଣସି ପ୍ରତିନିଧିଙ୍କ ସ୍ୱର୍ଗାରୋହଣ ହୁଏ, ତେବେ ଏହା ଈଶ୍ୱରଙ୍କ ଅଶେଷ ଆଶୀର୍ବାଦ; କାରଣ ଚନ୍ଦନକାଠରେ ଚିତା ଜଳିବାଠାରୁ ଆରମ୍ଭକରି ସାମରିକ ସମ୍ମାନ ପାଇବା ତଥା ରାଷ୍ଟ୍ରର ଉଚ୍ଚ ପଦାଧିକାରୀଙ୍କ ଦ୍ୱାରା ଗୁଣକୀର୍ତ୍ତନ କରାଯାଇ ତାଙ୍କ ପ୍ରତି ଶ୍ରଦ୍ଧାଞ୍ଜଳି ଅର୍ପଣ କରିବାଟା ପୂର୍ବଜନ୍ମର ସୁକର୍ମ ନଥିଲେ କେତେଜଣଙ୍କ ଭାଗ୍ୟରେ ଘଟେ ? ଏସବୁ ପାଇଁ ରାଜନୀତି ବ୍ୟବସାୟକୁ ଶ୍ରେଷ୍ଠ ବ୍ୟବସାୟ ବୋଲି ବିବେଚନା କରାଯାଉଛି ।

ଅନେକ ଜନସେବକ ନିର୍ବାଚନରେ ହାରିଗଲେ କିମ୍ବା ଜିଣି ମନ୍ତ୍ରୀପଦ ନ ପାଇଲେ ରାଜନୈତିକ

ସନ୍ୟାସ ଅବଲମ୍ବନ ପୂର୍ବକ ସମାଜ ସେବାରେ ନିଜକୁ ନିୟୋଜିତ କରବା କଥା ଉଠାନ୍ତି, ପ୍ରଚାର କରନ୍ତି ଦଳପ୍ରତି ଓ ଜନତାଙ୍କଠାରୁ ସହାନୁଭୂତି ପାଇବା ଉଦ୍ଦେଶ୍ୟରେ । ସ୍ୱାଧୀନତାର ଅର୍ଦ୍ଧଶତାବ୍ଦୀ ପରେ ସାଧାରଣ ଜନତା ବି ଏତେ ନିର୍ବୋଧ ନୁହନ୍ତି । ସେମାନେ ଜାଣନ୍ତି ଏହା ଶ୍ମଶାନ ବୈରାଗ୍ୟ । ସୁବିଧା ସୁଯୋଗ ମିଳିଲେ ସେମାନଙ୍କ ରୂପ ପୁଣି ବଦଳିଯାଏ । ଏପରି ଜନନେତା ଭୋଟରଙ୍କ ନିକଟରେ ଉତ୍ତରଦାୟୀ ହେବେ ବୋଲି କି ଆଶା କରାଯାଏ ?

ଦେଶରେ ରାଜନେତାଙ୍କ ଦ୍ୱାରା କେତେ ପ୍ରକାର ଦୁର୍ନୀତି ଯେ ହେଉଛି ତାହା ସାଧାରଣ ଜନତା କଳନା କରିବା ମୁସ୍କିଲ । ଏବେ ପେଟ୍ରୋଲ ପମ୍ପ ବଣ୍ଟନକୁ ନେଇ ହଇଚଇ ଚାଲିଛି । ଲୋକସଭା ଓ ରାଜ୍ୟସଭାର ଦୈନନ୍ଦିନ କାର୍ଯ୍ୟରେ ଅଚଳ ଅବସ୍ଥା ଯୋଗୁଁ ଦେଶର ରାଜକୋଷରୁ କୋଟି କୋଟି ଟଙ୍କା ବରଚାଦ ହେଉଛି । ଅପର ପକ୍ଷରେ, 'ମଇଁଷି ଶିଙ୍ଗ ଫଟା, ଯୁଝିଲା ବେଳକୁ ଗୋଟା' ପରି ସବୁଦଳ ଏକାଠି ହୋଇ ସୁପ୍ରିମକୋର୍ଟ ଓ ନିର୍ବାଚନ କମିଶନ ନିର୍ବାଚନରେ ପ୍ରାର୍ଥୀହେବାପାଇଁ କେତେକ କଟକଣା ଜାରି କରିଥିବାରୁ ତା ବିରୋଧରେ ସ୍ୱର ଉତ୍ତୋଳନ କରୁଛନ୍ତି । ଏପରିକି, ପାର୍ଲିଆମେଣ୍ଟରେ ଆଇନ କରି ଉକ୍ତ ସଂସ୍ଥାଦ୍ୱୟର କ୍ଷମତାକୁ ସଂକୋଚନ କରିବାକୁ ପ୍ରସ୍ତାବ ବାଢ଼ିଛନ୍ତି । ଏଣୁ ଏପରି ଜନପ୍ରତିନିଧିଙ୍କ ଠାରୁ କି ଉତ୍ତରଦାୟିତ୍ୱ ବିଷୟ ଚିନ୍ତା କରାଯାଇପାରେ ।



(ସମାଜ, ୩୧ ଅଗଷ୍ଟ, ୨୦୦୨ ରେ ପ୍ରକାଶିତ)

# ପୁଞ୍ଜିବାଦର ଲେଲିହାନ ଶିଖା

ପୁଞ୍ଜିବାଦର ଲେଲିହାନ ଶିଖା ତାର କଳେବରକୁ ଏପରି ବିସ୍ତାର କଲାଣି ଯେ ମଣିଷ ସମାଜ ନିଜର ଅସ୍ତିତ୍ୱ ରକ୍ଷାକରିବା ଦୁଷ୍କର । ପୁଞ୍ଜି ବୃଦ୍ଧି ପାଇଁ ମଣିଷ ଜୀବନକୁ ନେଇ ପ୍ରତି ମୁହୂର୍ତ୍ତରେ ଖେଳ ଚାଲିଛି । ସଂପ୍ରତି ଶାସନ ଓ ସମାଜରେ ପୁଞ୍ଜିପତିଙ୍କ ପ୍ରଭାବ ଦିନୁଦିନ ବଢ଼ିବାରେ ଲାଗିଛି । ବିଂଶ - ଶତାବ୍ଦୀର ଅଷ୍ଟମ ଦଶକ ପରଠାରୁ ସମାଜ ଓ ଶାସନ ନିଜର ସତ୍ତା ହରାଇ ବସିଲାଣି । ଲାଭଖୋର ବ୍ୟବସାୟୀ ଏବଂ ସେମାନଙ୍କ ଦ୍ୱାରା ବିସ୍ତାରିତ ବଜାର ଏବେ ଦେଶର ମୁଖ୍ୟ ଅଧିକାରୀ । ମଣିଷ ନିଜର ଅଭାବ ପୂରଣ ପାଇଁ ବଜାର ସୃଷ୍ଟି କରିଥିଲା, ବଜାର ଉପରେ ତାର ନିୟନ୍ତ୍ରଣ ଥିଲା; କିନ୍ତୁ ଏବେ ବଜାର ମଣିଷକୁ ନିୟନ୍ତ୍ରଣ କରୁଛି । ଆକାଶବାଣୀ, ଦୂରଦର୍ଶନ ଓ ଇଣ୍ଟରନେଟ୍‌ରେ ପ୍ରଚାରିତ ବିଜ୍ଞାପନ ବ୍ୟକ୍ତି ଓ ସମାଜକୁ ଏପରି ପ୍ରଭାବିତ କଲାଣି ଯେ ସେମାନେ ଜୀବନଯାପନ ପାଇଁ ଏହା ଅତ୍ୟାବଶ୍ୟକ ବୋଲି ମନେ କଲେଣି । ଆମେ ଆଗେ ଆବଶ୍ୟକ ପଦାର୍ଥର କ୍ରୟ ପାଇଁ ବଜାରକୁ ଯାଉଥିଲୁ; କିନ୍ତୁ ଏବେ ବଜାର ଆମ ଦାଣ୍ଡ ଦୁଆରରେ । ଏମ୍.ବି.ଏ ତଥା ଉଚ୍ଚଶିକ୍ଷା ଲାଭକରିଥିବା ଯୁବକ ଯୁବତୀଗଣ ଅତ୍ୟାଧୁନିକ ପୋଷାକ ପିନ୍ଧି ସାହେବୀ କାଇଦାରେ ଖଣ୍ଡିଆ ଖଣ୍ଡିଆ ଇଂରାଜୀ କହି, ନୂତନ ନୂତନ ଉତ୍ପାଦିତ ପଦାର୍ଥଗୁଡ଼ିକର କ୍ରୟ ପାଇଁ ଗ୍ରାହକଙ୍କୁ ଆକର୍ଷଣ କରୁଛନ୍ତି । ବଡ଼ ବଡ଼ କମ୍ପାନୀମାନଙ୍କ ଉତ୍ପାଦିତ ଦ୍ରବ୍ୟଗୁଡ଼ିକର ବିକ୍ରୟ ପାଇଁ ଏ ଏକ ଅଭିନବ କୌଶଳ । ପୂର୍ବେ ଲୋକେ ନିଜ ଚାହିଦା ଓ ଆର୍ଥିକ ଅବସ୍ଥା ବା ସମ୍ବଳକୁ ଚାହିଁ ଜିନିଷ କିଣୁଥିଲେ କିନ୍ତୁ ଏବେ ମାଲ ବିକ୍ରୟ ପାଇଁ କମ୍ପାନୀମାନେ କ୍ରେଡ଼ିଟ କାର୍ଡର ପ୍ରଚଳନ କଲେଣି । ଆମ ଦେଶର ପ୍ରଚଳିତ ଢ଼ଗ ଅନୁଯାୟୀ 'ଉଧାରି ପାଇଲେ କିଣନ୍ତି ହାତୀ' ପରି ଲୋକେ ନିଜ ସମ୍ବଳ କଥା ବିଚାର ନକରି ନୂତନ ଉତ୍ପାଦିତ ଜିନିଷ କିଣିବାରେ ଲାଗିଛନ୍ତି । ଏତଦ୍ୱାରା କମ୍ପାନୀ ଓ ବ୍ୟବସାୟୀ ଗୋଷ୍ଠୀ ପ୍ରଚୁର ଅର୍ଥ ଉପାର୍ଜନ କରୁଛନ୍ତି; କିନ୍ତୁ ସାଧାରଣ ଜନତା ଚଳିତଳାନ୍ତ ହେଉଛି ।

ଆମେରିକାରେ ମଣିଷର ଅଙ୍ଗପ୍ରତ୍ୟଙ୍ଗ ବିକ୍ରି ଏକ ବେଶ୍ ଲାଭଜନକ ବ୍ୟବସାୟ । ସେଠାରେ ମଣିଷର ଅସ୍ଥି, ଚର୍ମ, ଯକୃତ, ଚକ୍ଷୁ ଆଦି ମୂଲ୍ୟବାନ ଜୀବାଙ୍ଗ ବିକ୍ରି ହାରାହାରି ପଚାଶ କୋଟି ପାଉଣ୍ଡର ହେଉଛି । ମୃତ୍ୟୁପରେ ଅଙ୍ଗ ଦାନ ପାଇଁ ଜନତାଙ୍କୁ ବିଭିନ୍ନ ଆଳରେ କେତେ ପ୍ରକାର ପ୍ରଲୋଭନ ଦେଖାଯାଉଛି ଅଥଚ ପୁଞ୍ଜିପତି ଗୋଷ୍ଠୀ ଏ ସବୁ ବିକ୍ରୟ କରି କୋଟି କୋଟି ଟଙ୍କାର ଲାଭ ଉଠାଉଛନ୍ତି । ଗତ ଅର୍ଦ୍ଧଶତାବ୍ଦୀ ମଧ୍ୟରେ ଶଲ୍ୟ ଚିକିତ୍ସା କ୍ଷେତ୍ରରେ ଅଭୂତପୂର୍ବ ପ୍ରଗତି ଘଟିଛି ଏବଂ ଅଙ୍ଗ ପ୍ରତ୍ୟଙ୍ଗ ବିକ୍ରି କ୍ଷେତ୍ରରେ ବ୍ୟବସାୟୀ ଗୋଷ୍ଠୀକୁ ଏହା ବିଶେଷ ସହାୟକ ହୋଇଛି । ଏଣେ ସ୍ଲୋଗାନ ଦିଆଯାଉଛି -

"ଚକ୍ଷୁଦାନ ମହତ୍ ଦାନ" । ମୃତ୍ୟୁପୂର୍ବରୁ ବଦାନ୍ୟ ବ୍ୟକ୍ତିଗଣ ଇଚ୍ଛାପତ୍ରରେ ସ୍ୱାକ୍ଷର କରୁଛନ୍ତି ଅଥଚ ତା ଉପରେ ଲାଭଜନକ ବ୍ୟବସାୟ ହେଉଛି । ଦରିଦ୍ର ଶ୍ରେଣୀର ଲୋକେ କ୍ଷୁଧା ନିବାରଣ ପାଇଁ ରକ୍ତ, ମୂତ୍ରାଶୟ ବିକ୍ରି କରୁଛନ୍ତି । ଧନିକ ଗୋଷ୍ଠୀ ଅଳ୍ପ ଦରରେ କ୍ରୟକରି ସେ ସବୁ ଚଢ଼ା ଦରରେ ବିକୁଛନ୍ତି । ଟଙ୍କା ଲୋଭରେ ଦେଶର ଦଳେ ଅବିବେକୀ ଡାକ୍ତର ରୋଗ ଉପଶମ ଆଳରେ ଅସ୍ତ୍ରୋପଚାର ପୂର୍ବକ ବ୍ୟକ୍ତିର ମୂଲ୍ୟବାନ ଅଙ୍ଗ ମୂତ୍ରାଶୟ କାଢ଼ି ନେଇ ଧନିକ ଗୋଷ୍ଠୀଙ୍କୁ ବିକ୍ରୟ କରୁଛନ୍ତି । ଧନ ପାଇଁ ମାନବ କିପରି ଦାନବ ପାଲିଟିଛି, ଏହା ଏକ ଜ୍ୱଳନ୍ତ ଦୃଷ୍ଟାନ୍ତ ।

ମଣିଷ ହିଁ ମଣିଷର ଶତ୍ରୁ । ଧନ ହିଁ ମଣିଷ ମଣିଷ ମଧ୍ୟରେ ବିଭେଦ ସୃଷ୍ଟି କରି ଆସୁଛି । ନିଜର ଅଙ୍ଗର ପୁଷ୍ଟି ସାଧନ ପାଇଁ ମଣିଷ ଅନ୍ୟ ମଣିଷକୁ ନେଇ ବ୍ୟବସାୟ କରିବା କିଛି ନୂଆକଥା ନୁହେଁ । ଇତିହାସ ପୃଷ୍ଠା ଉନ୍ମୋଚନ କଲେ ଏହାର ଭୂରି ଭୂରି ପ୍ରମାଣ ମିଳେ । ଆମେରିକାବାସୀ ଆଫ୍ରିକାରୁ ନିଗ୍ରୋମାନଙ୍କୁ ନେଇ 'ଦାସ ବ୍ୟବସାୟ' କରୁଥିଲେ । ଜାହାଜରେ କେହି ଅସୁସ୍ଥ ହେଲେ ଜୀଅନ୍ତା ଅବସ୍ଥାରେ ସମୁଦ୍ରକୁ ଫିଙ୍ଗି ଦିଆଯାଉଥିଲା ଏବଂ ମଣିଷ ମାଛ ଓ ମଗରର ଭୋଜ୍ୟବସ୍ତୁ ହେଉଥିଲା । ସେହିପରି ଇଂରେଜମାନେ ଭାରତୀୟ ମାନଙ୍କୁ ଫିଜି ଓ ଭାରତୀୟ ଦ୍ୱୀପପୁଞ୍ଜକୁ ନେଇ ବିକ୍ରିକରି ଅର୍ଥ ଉପାର୍ଜନ କରୁଥିଲେ । ଏବେ ବି ସେଇ ଧରଣର ମଣିଷ ବ୍ୟବସାୟ ଚାଲିଛି । ନେପାଳ, ବଙ୍ଗଳା ଦେଶରୁ ଯୁବତୀ ଝିଅମାନଙ୍କୁ ଆଣି ଭାରତ, ମଧ୍ୟପ୍ରାଚ୍ୟ ଓ ଇଉରୋପରେ ବ୍ୟବସାୟ କରାଯାଉଛି ।

ଯୁଗେ ଯୁଗେ ପୁଞ୍ଜିପତି ମଣିଷକୁ ପଣ୍ୟଦ୍ରବ୍ୟ ରୂପେ ବ୍ୟବହାର କରି ନିଜର ସୁଖସ୍ୱାଚ୍ଛନ୍ଦ୍ୟ ପାଇଁ ସବୁପ୍ରକାର ବ୍ୟବସ୍ଥା କରି ଆସିଛି । ମଣିଷକୁ ମଣିଷର ସମ୍ମାନ ଦେବା ପାଇଁ ସାରା ବିଶ୍ୱରେ ଦୀର୍ଘକାଳ ସଂଗ୍ରାମ ହୋଇଛି । ସାମ୍ୟବାଦର ପ୍ରତିଷ୍ଠା ପାଇଁ ଅହରହ ଉଦ୍ୟମ,ହୋଇଛି । ସୋଭିଏଟ୍ ୟୁନିୟନର ଅଭ୍ୟୁଦୟ ପୁଞ୍ଜିବାଦକୁ ଏକ ଶକ୍ତ ଧକ୍କା ଦେଇଥିଲା; କିନ୍ତୁ ପୁଞ୍ଜିବାଦର ଚକ୍ରାନ୍ତରୁ ସେ ମୁକ୍ତ ହୋଇ ପାରିଲା ନାହିଁ ଫଳରେ ତାର ପତନ ଘଟିଲା । ସୋଭିଏଟ୍ ଦେଶର ପତନ ପରେ ସାରା ବିଶ୍ୱରେ ପୁଞ୍ଜିବାଦୀ ଦେଶଗୁଡ଼ିକ ସେମାନଙ୍କ ପ୍ରଭୁତ୍ୱ ବିସ୍ତାର ପାଇଁ ବିଭିନ୍ନ ଷଡ଼ଯନ୍ତ୍ର କରୁଛନ୍ତି ।

ବହୁଦେଶୀୟ କମ୍ପାନୀ ଭାରତରେ ଇଷ୍ଟଇଣ୍ଡିଆ କମ୍ପାନୀ ସଦୃଶ ବିକାଶଶୀଳ ଦେଶମାନଙ୍କରେ ଉପନିବେଶ ସ୍ଥାପନ କରି ବାଣିଜ୍ୟ ବ୍ୟବସାୟ କରିବାକୁ ଚକ୍ରାନ୍ତ ଚଳାଇଛନ୍ତି । ବିଶ୍ୱବ୍ୟାଙ୍କ ଓ ଆନ୍ତର୍ଜାତିକ ମୁଦ୍ରାପାଣ୍ଠି ଋଣ ଦେଇ ଦେଶର ସାର୍ବଭୌମତ୍ୱ ଉପରେ ଆକ୍ରମଣ କଲାଣି । ଏହି ସଂସ୍ଥାମାନଙ୍କ ଦ୍ୱାରା ଦେଶର ଶିକ୍ଷା, ସ୍ୱାସ୍ଥ୍ୟ, କୃଷି, ବାଣିଜ୍ୟ ସମ୍ପୂର୍ଣ୍ଣ ରୂପେ ନିୟନ୍ତ୍ରିତ ଯେଉଁଗୁଡ଼ିକର ବିକାଶ ଏକ ସାର୍ବଭୌମ ଦେଶର ଆଭ୍ୟନ୍ତରୀଣ ବ୍ୟାପାର ।

ପୁଞ୍ଜିବାଦର ଲେଲିହାନ ଶିଖା ସମଗ୍ର ମାନବ ସମାଜକୁ ଗ୍ରାସ କରିବାକୁ ବସିଲାଣି । ଏହାର କବଳରୁ ରକ୍ଷା ପାଇବା ନିମନ୍ତେ ଭାରତବର୍ଷରେ ଦ୍ୱିତୀୟ ସ୍ୱାଧୀନତା ସଂଗ୍ରାମ ପାଇଁ ପ୍ରସ୍ତୁତି ଲୋଡ଼ା ।

(ସମାଜ, ୬ ଅଗଷ୍ଟ, ୨୦୦୨ରେ ପ୍ରକାଶିତ)

# ନବ୍ୟ ସାମନ୍ତବାଦର ଅଭ୍ୟୁଦୟ

ଇତିହାସର ପୃଷ୍ଠା ଉନ୍ମୋଚନ କଲେ ଜଣାଯାଏ ଯେ ସାମନ୍ତବାଦର ପ୍ରଥମ ଉଦ୍ଭବ ହୋଇଥିଲା ଇଉରୋପ ମହାଦେଶର ପଶ୍ଚିମାଞ୍ଚଳରେ । ସାମନ୍ତବାଦୀଗଣ ଭୂମି ଉପରେ ନିଜର ମାଲିକାନା ଜାହିର କଲେ ଏବଂ କାଳକ୍ରମେ ସେହି ଭୂମିକୁ ପୁରୁଷାନୁକ୍ରମେ ଭୋଗଦଖଲ କଲେ । ଭୂମ୍ୟଧିକାରୀଙ୍କ ପ୍ରତ୍ୟକ୍ଷ ଶାସନ ଆରମ୍ଭ ହେଲା ପ୍ରଜାଙ୍କ ଉପରେ । ଶୋଷଣ ପାଇଁ ଦୁଇଟି ଦିଗ ଉନ୍ମୁକ୍ତ ହେଲା - ଗୋଟିଏ ହେଲା ପ୍ରଜାଙ୍କ 'କୋର୍ଭେ' ବା ବେଠି ଖଟିବା ଏବଂ ଅନ୍ୟଟି ହେଲା ଜିନିଷ ବା ଟଙ୍କା ଆକାରରେ ପ୍ରଜାଙ୍କଠାରୁ ଭୂକର ଆଦାୟ । ପ୍ରଜାଙ୍କୁ ବେଠି ଖଟାଇବା ଓ କର ଆଦାୟ କରିବା ପାଇଁ କର୍ମଚାରୀ ନିଯୁକ୍ତ ହେଲେ । ବାର୍ଷିକ କର ଦେୟ ସର୍ତ୍ତରେ କ୍ଷୁଦ୍ର ଅଞ୍ଚଳ ଓ ଗ୍ରାମାଞ୍ଚଳରେ ଯଥାକ୍ରମେ ଜମିଦାର ଓ ଗାଁ ପ୍ରଧାନ ପଦ ସୃଷ୍ଟି କରାଗଲା । ପ୍ରଜାଙ୍କ ଉପରେ ନିର୍ଯାତନାର ସୀମା ରହିଲା ନାହିଁ । ଅନ୍ୟପକ୍ଷରେ, ରାଜା, ଜମିଦାର, ସାମନ୍ତବାଦୀ ଗୋଷ୍ଠୀ ଅୟସ ଜୀବନଯାପନ କଲେ । ତତ୍‌ସଙ୍ଗେ ନିଜ ଅଧିକୃତ ଅଞ୍ଚଳରେ ସାର୍ବଭୌମ କ୍ଷମତା ବିସ୍ତାର କଲେ । ଦିନ ଆସିଲା, ନିର୍ଯାତିତ ପ୍ରଜା ଓ ଜନତାର ବିଦ୍ରୋହ ଫଳରେ ସାମନ୍ତବାଦର ଅବସାନ ହେଲା । ସାରା ବିଶ୍ୱରେ ସ୍ୱାଧୀନଚେତା ମଣିଷ ନିଜର ଅଧିକାର ସାବ୍ୟସ୍ତ କଲା । ଆମ ଦେଶ ଭାରତବର୍ଷ ମଧ୍ୟ ସେହିପରି ପରାଧୀନତାରୁ ମୁକ୍ତ ହେଲା ଦୀର୍ଘ ସଂଗ୍ରାମପରେ ବ୍ରିଟିଶ ଶାସନ କବଳରୁ । ସ୍ୱାଧୀନତା ସଂଗ୍ରାମୀ ଓ ଦେଶଭକ୍ତଙ୍କ ଦେଶପାଇଁ ତ୍ୟାଗ ଓ ସ୍ୱାଧୀନତା ପାଇଁ ନିର୍ଯାତିତ ଜୀବନର କାହାଣୀ ରହିଗଲା ଇତିହାସର ନିଭୃତ ପୃଷ୍ଠାରେ । ସେମାନଙ୍କ ଦାୟାଦଗଣ ଦେଶର ଶାସନ ଡୋରି ନିଜ ଅକ୍ତିଆରକୁ ନେଇ ସାମନ୍ତ ପାଲଟିଲେ । ସୃଷ୍ଟି ହେଲା ନବ୍ୟ ସାମନ୍ତବାଦ । ଦୁଇ ସାମନ୍ତବାଦୀଙ୍କ ମଧ୍ୟରେ ଏତିକି ପାର୍ଥକ୍ୟ ଯେ ଏମାନେ ପାଞ୍ଚବର୍ଷରେ ଥରେ ନିର୍ବାଚନରେ ସମ୍ମୁଖୀନ ହୁଅନ୍ତି । ଏତଦ୍‌ବ୍ୟତୀତ ପୂର୍ବତନ ସାମନ୍ତବାଦୀଙ୍କ ଚରିତ୍ର, କାର୍ଯ୍ୟକଳାପ ଏହି ନବ୍ୟ ସାମନ୍ତବାଦୀଙ୍କଠାରେ ଦୃଷ୍ଟିଗୋଚର ହୁଏ । ପ୍ରଜାଙ୍କଠାରୁ ଆଦାୟ 'କର'ରୁ ମଧ୍ୟ ଏମାନେ ଅୟସ ଜୀବନଯାପନ କରନ୍ତି । କ୍ଷମତାର ଅପବ୍ୟବହାର କରି ରାତାରାତି ଧନିକଗୋଷ୍ଠୀରେ ସାମିଲ ହେବାର ଏମାନଙ୍କ ଲକ୍ଷ୍ୟ । ଶୀତତାପ ନିୟନ୍ତ୍ରିତ ସରକାରୀ ବାସଗୃହରେ ରହନ୍ତି, ସରକାରୀ ଗସ୍ତରେ ଗଲେ ଶୀତତାପ ନିୟନ୍ତ୍ରିତ କାର, ରହିବା ପାଇଁ ଡାକବଙ୍ଗଳା, ସଙ୍ଗରେ ଦେହରକ୍ଷୀ, ବୋଲକରା, ପଛୁଆ, ତୋଷାମଦକାରୀ । ଯେଉଁଠି ରହିବେ ଅଧସ୍ତନ କର୍ମଚାରୀଙ୍କ ରସଦ ବ୍ୟବସ୍ଥା, ତାହା ବି ଚର୍ବ୍ୟ, ଚୋଷ୍ୟ, ଲେହ୍ୟ, ପେୟର, ଉପଯୁକ୍ତ ବ୍ୟବସ୍ଥା ନ ହେଲେ ରାଗରେ ପଞ୍ଚମ । ଲୋକ ପ୍ରତିନିଧି ଓ ରାଜା,

ଜମିଦାରଙ୍କ ମଧ୍ୟରେ କୌଣସି ତାରତମ୍ୟ ପରିଲକ୍ଷିତ ହୁଏ ନାହିଁ । ବରଂ ପୂର୍ବେ ରାଜା, ଜମିଦାର ପ୍ରଜାଙ୍କ ପାଖକୁ ଯାଇ ହାରି ଗୁହାରି ଶୁଣୁଥିଲେ କିନ୍ତୁ ଏବେ ନବ୍ୟ ସାମନ୍ତଙ୍କ ନିକଟକୁ ଦୁଃଖ ଦୁର୍ଦ୍ଦଶା ଜଣାଇବାକୁ ଗଲେ ବଙ୍ଗଳାର ଫାଟକ ଜଗୁଆଳି, ପିଅନ, ପି.ଏ. ଆଦି କେତେ ମଧ୍ୟସ୍ଥଙ୍କ ମଧ୍ୟଦେଇ ଯିବାକୁ ହୁଏ, ଏହା ସତ୍ତ୍ୱେ ସାମନ୍ତ ଗୁହାରି ଶୁଣିବାକୁ ନାରାଜ, କାମରେ ବ୍ୟସ୍ତ ଅଛି ପରେ ଆସିବ କହି ବିଦାୟ ଦିଅନ୍ତି । ଏଇ ତ ଲୋକତନ୍ତ୍ର ଶାସନ । ନବ୍ୟ ସାମନ୍ତଗଣ ରାଜା, ଜମିଦାରଙ୍କ ପରି ଦାନ ଧର୍ମରେ ଧୁରନ୍ଧର । ଜୟାଙ୍କ ଦୁଇଟି ମନ୍ଦିରକୁ ମୁକ୍ତ ହସ୍ତରେ ଦାନ ଏହାର ଏକ ସଦ୍ୟ ଦୃଷ୍ଟାନ୍ତ । ଗୋଟିଏ ମନ୍ଦିରକୁ ଗୋଟିଏ ହାତୀସହ ୩୪୯ ଗ୍ରାମ ଓଜନର ସୁନା ମୁକୁଟ ଓ ଗୋଟିଏ ସୁନା ତ୍ରିଶୂଳ ଏବଂ ଅନ୍ୟ ଏକ ମନ୍ଦିରକୁ ଦୁଇଲକ୍ଷ ପଞ୍ଚସ୍ତରି ହଜାର ଟଙ୍କା ଦାନ । ଏମାନେ ଟପିଗଲେ ପୂର୍ବତନ ସାମନ୍ତଙ୍କଠାରୁ ।

କେବଳ ସେତିକି ନୁହେଁ, ନବ୍ୟ ସାମନ୍ତଗଣ ସରକାରୀ ବାସଗୃହରେ ରହନ୍ତି କିନ୍ତୁ ବର୍ଷ ବର୍ଷ ଧରି ଘରଭଡ଼ା ଦିଅନ୍ତି ନାହିଁ । ବିଜୁଳୀ, ପାଣି ଓ ଟେଲିଫୋନ୍ ବିଲର ଲକ୍ଷ ଲକ୍ଷ ଟଙ୍କା ପଇଠ କରନ୍ତି ନାହିଁ । ଏହାସତ୍ତ୍ୱେ ସେମାନଙ୍କୁ ଗୃହରୁ ଉଚ୍ଛେଦ କରାଯାଏ ନାହିଁ ବା ବିଜୁଳୀ, ଫୋନ୍ ଲାଇନ୍ କଟାଯାଏ ନାହିଁ ।

ତେଣୁ ଏହି ନବ୍ୟ ସାମନ୍ତବାଦର ଉଚ୍ଛେଦ ପାଇଁ ଜନତାକୁ ପୁଣି ଏକ ସଂଗ୍ରାମ କରିବା ଅତ୍ୟାବଶ୍ୟକ ମନେହୁଏ । ସେଇ ସଂଗ୍ରାମ ସିନା ଥିଲା ବିଦେଶୀ ସାହେବଙ୍କୁ ତଡ଼ିବା ପାଇଁ କିନ୍ତୁ ଏଇ ସଂଗ୍ରାମ ହବ ଦେଶର ନବ୍ୟ ସାମନ୍ତବାଦୀଙ୍କ ଆଭିମୁଖ୍ୟ ପରିବର୍ତ୍ତନ ପାଇଁ ଏବଂ ସମାଜବାଦର ପ୍ରତିଷ୍ଠା ପାଇଁ । ଏ ପ୍ରସଙ୍ଗରେ ଦେଶର ବୁଦ୍ଧିଜୀବୀଗଣ ଚିନ୍ତା କରିବେ କି ?



(ସମାଜ, ୨୧ ଜୁଲାଇ, ୨୦୦୧ ରେ ପ୍ରକାଶିତ)

# ପୁଞ୍ଜିବାଦୀ ଅର୍ଥନୀତିର ନବକଳେବର

ସୋଭିଏତ ୟୁନିଅନର ପତନ ପରେ ପୁଞ୍ଜିବାଦୀ ଦେଶଗୁଡ଼ିକ ପୁଞ୍ଜିବାଦର ସମ୍ପ୍ରସାରଣ ପାଇଁ ସକ୍ରିୟ ହୋଇ ଉଠିଛନ୍ତି । ଘରୋଇକରଣ, ଉଦାରୀକରଣ, ଜଗତୀକରଣ ନାମରେ ପୁଞ୍ଜିବାଦକୁ ପ୍ରୋତ୍ସାହନ କରାଯାଉଛି । ଘରୋଇକରଣ ଏକ ଗଣତାନ୍ତ୍ରିକ ତଥା ସମାଜବାଦ ଅଭିମୁଖୀ ରାଷ୍ଟ୍ରପକ୍ଷରେ ଆଦୌ ସ୍ପୃହଣୀୟ ନୁହେଁ । ଜନସାଧାରଣଙ୍କ ସାମାଜିକ ଓ ଅର୍ଥନୈତିକ ବିକାଶ - ଏ ପ୍ରତି ଅଙ୍ଗିକାରବଦ୍ଧ ହେବା ସମାଜବାଦୀ ରାଷ୍ଟ୍ରର ନୈତିକ ଦାୟିତ୍ୱ ଓ କର୍ତ୍ତବ୍ୟ ଅଟେ । ଏତଦ୍‌ବ୍ୟତୀତ ଅର୍ଥନୈତିକ ପରିଚାଳନା ଓ ଉତ୍ପାଦନ ପ୍ରକ୍ରିୟାରେ ଶ୍ରମିକ ତଥା କର୍ମଚାରୀ ପ୍ରତ୍ୟକ୍ଷ ଅଂଶଗ୍ରହଣ କରିବେ, ଏତଦ୍ୱାରା ସେମାନଙ୍କ ସୃଜନୀଶକ୍ତି ଓ ଉଦ୍ୟମର ବିକାଶ ଘଟିବ । ସାମ୍ୟବାଦର ପ୍ରବକ୍ତା ଲେନିନ୍ କହିଥିଲେ ଯେ ଗଣତାନ୍ତ୍ରିକ ପ୍ରକ୍ରିୟା ଓ କେନ୍ଦ୍ରିକରଣକୁ ସର୍ବଦା ବିପନ୍ନ କରେ ଅମଲାତନ୍ତ୍ର ଓ ଅରାଜକତା । ଏହା ଏକ ନିଷ୍ଠୁର ସତ୍ୟ । ସମାଜବାଦୀ ରାଷ୍ଟ୍ର ଲାଭ ଓ କ୍ଷତିକୁ ବିଚାର ନକରି ଜନହିତୈଷୀ କାର୍ଯ୍ୟକ୍ରମ କାର୍ଯ୍ୟକାରୀ କରିବା ସହ ଯୁବ ପିଢ଼ିପାଇଁ କର୍ମସଂସ୍ଥାନ ସୃଷ୍ଟି କରିବା ଉଚିତ । ସମ୍ପ୍ରତି ଦେଶରେ ବିଭିନ୍ନ ଆଳ ଦେଖାଇ ସାଧାରଣ ଉଦ୍ୟୋଗ ଗୁଡ଼ିକ ଘରୋଇକରଣ କରି କର୍ମ ସଙ୍କୋଚନର ଆଭିମୁଖ୍ୟ ଗ୍ରହଣ କରାଯାଉଛି । ଯଦି ଏକ ଗଣତାନ୍ତ୍ରିକ ରାଷ୍ଟ୍ରରେ ନୀତି ଓ ଲକ୍ଷ୍ୟ ଏଇୟା ହୁଏ, ତେବେ ଗଣତାନ୍ତ୍ରିକ ସମାଜ ଓ ସାମନ୍ତବାଦୀ ତଥା ପୁଞ୍ଜିବାଦୀ ସମାଜ ମଧ୍ୟରେ ପାର୍ଥକ୍ୟ କ'ଣ ବୁଝି ହୁଏନା ।

ବିଶ୍ୱର ବିଭିନ୍ନ ରାଷ୍ଟ୍ରର ସଚେତନ ନାଗରିକଗଣ ଜଗତୀକରଣ ବିରୋଧରେ ସ୍ୱର ଉତ୍ତୋଳନ କରନ୍ତି । ଏବେ ଇଟାଲୀର ବନ୍ଦର ସହର ଗେନୋଆରେ ଆହୂତ ଜଗତୀକରଣ ସମ୍ମିଳନୀ ଜି-୮ କୁ ସ୍ଥାନୀୟ ଜନତା ବିରୋଧ କରିଛନ୍ତି ଏବଂ ସଂଘର୍ଷରେ ଜଣକର ପ୍ରାଣହାନି ବି ଘଟିଛି । ଦେଶ ଦେଶ ମଧ୍ୟରେ ବାଣିଜ୍ୟିକ କାରବାର ଏକ ନୂଆ କଥା ନୁହେଁ । ପ୍ରଥମ ସହସ୍ରାବ୍ଦର ପ୍ରଥମ ଦଶନ୍ଧିରେ ଚୀନ ଦେଶର ରେଶମବସ୍ତ୍ର ଭାରତବର୍ଷରେ ବହୁଳ ପରିମାଣରେ ବିକ୍ରୟ ହେଉଥିଲା । ଭାରତବର୍ଷର ରୋମ, ପାରସ୍ୟ ଓ ମିଶର ଦେଶ ସମୂହ ସହ ବଣିଜ ଚାଲୁଥିଲା । ତଦାନୀନ୍ତନ ରୋମ ଐତିହାସିକ ପ୍ଲିନୀ ଅଭିଯୋଗ କରିଥିଲେ ଯେ ଭରତ ରୋମକୁ ମସଲା, ଅତର ଓ ମୂଲ୍ୟବାନ ପଥର ଯୋଗାଇ ଅଜସ୍ର ଅର୍ଥ ନେଇଯାଉଛି । ପ୍ରାଚୀନ କାଳରେ ପ୍ରାଚ୍ୟ ଓ ପାଶ୍ଚାତ୍ୟ ଦେଶଗୁଡ଼ିକ ମଧ୍ୟରେ ବାଣିଜ୍ୟ ବ୍ୟବସାୟ ଓ ସାଂସ୍କୃତିକ ଆଦାନପ୍ରଦାନ ହେଉଥିବାର ଐତିହାସିକ ପ୍ରମାଣ ମିଳେ । ତେବେ, ଏବେ ଜଗତୀକରଣ ପାଇଁ ବିରୋଧ କରାଯାଉଛି କାହିଁକି ? ଅଷ୍ଟାଦଶ ଶତାବ୍ଦୀର ଶିଳ୍ପବିପ୍ଳବ ପୃଥିବୀ ଇତିହାସରେ ଏକ ନୂତନ ଅଧ୍ୟାୟ ସୃଷ୍ଟି କଲା । ଇଂଲଣ୍ଡ ଓ ଇଉରୋପୀୟ ବଣିକ ଗୋଷ୍ଠୀ ବଣିଜ ଛଳରେ ଉପନିବେଶ

ସ୍ଥାପନ ପୂର୍ବକ ଅନୁନ୍ନତ ଦେଶମାନଙ୍କରେ ପ୍ରଭୁତ୍ୱ ବିସ୍ତାର କଲେ । ସ୍ଥାନୀୟ ଶାସନରେ ହସ୍ତକ୍ଷେପ କରି ସେ ଅଞ୍ଚଳ ଦଖଲ କଲେ ଏବଂ ନିଜ ଶାସନ ଜାହିର କଲେ । ଦେଖାଗଲା ଯେ ଏକ ଏକ କ୍ଷୁଦ୍ରରାଜ୍ୟ ବିଶାଳ ଭୂଖଣ୍ଡର ଅଧିବାସୀଙ୍କ ଏକଛତ୍ରପତି ଶାସକ ହେଲେ । ଦୃଷ୍ଟାନ୍ତ ସ୍ୱରୂପ ଦ୍ୱିତୀୟ ବିଶ୍ୱଯୁଦ୍ଧ ପୂର୍ବରୁ ବ୍ରିଟେନର ଜନସଂଖ୍ୟା ଥିଲା ୪ କୋଟି ୭୦ ଲକ୍ଷ; କିନ୍ତୁ ତା'ର ଉପନିବେଶ ଗୁଡ଼ିକର ଜନସଂଖ୍ୟା ଥିଲା ୪୮ କୋଟି । ସେହିପରି ଫ୍ରାନ୍ସ, ହଲାଣ୍ଡ ପ୍ରଭୃତି ଦେଶମାନଙ୍କର ଲୋକସଂଖ୍ୟା ମଧ୍ୟ ଉପନିବେଶ ମାନଙ୍କ ଲୋକସଂଖ୍ୟାଠାରୁ ଯଥେଷ୍ଟ କମ୍ ଥିଲା । ଏହି ଉପନିବେଶବାଦୀଙ୍କ କବଳରୁ ମୁକ୍ତି ପାଇବା ପାଇଁ ଶାସିତ ଜନତାଙ୍କୁ ଦୀର୍ଘଦିନ ସଂଗ୍ରାମ କରିବାକୁ ପଡ଼ିଛି । କେତେ ଯେ ସଂଗ୍ରାମୀ ଫାଶୀଖୁଣ୍ଟରେ ଝୁଲିଛନ୍ତି ଓ କେତେ ରୁଦ୍ଧ କାରାର ଅନ୍ଧକାରରେ ସଡ଼ିଛନ୍ତି, ତା'ର କଳନା ନାହିଁ । ଉପନିବେଶବାସୀଙ୍କ ମନରୁ ଏ ପର୍ଯ୍ୟନ୍ତ ସେ ଯନ୍ତ୍ରଣାର ଉପଶମ ହୋଇନାହିଁ । ଏ ପରିପ୍ରେକ୍ଷୀରେ ଜଗତୀକରଣ ପ୍ରସଙ୍ଗ ଶୁଣିଲେ ସେମାନଙ୍କ ମନ ଏହା ବିରୋଧରେ ସ୍ୱତଃ ବିଦ୍ରୋହୀ ହୋଇଉଠେ । କଥାରେ ଅଛି, ଯାହାକୁ ସାପ କାମୁଡ଼ିଥାଏ, ତା ମା' ପାଳ ଦଉଡ଼ି ଦେଖିଲେ ଭୟକରେ । ପୁଣି ଦେଖାଯାଏ ଯେ ବିଶ୍ୱର ବୃହତ୍‌ଶକ୍ତି ମାନଙ୍କ ସାମ୍ରାଜ୍ୟବାଦୀ ମନୋଭାବ ଦୂର ହୋଇନାହିଁ । ମଣିଷଖିଆ ବାଘକୁ ସହଜେ ବିଶ୍ୱାସ କରି ହୁଏନାହିଁ । ଏହାର ଦୃଷ୍ଟାନ୍ତ ଏବେ ବି ଦେଖିବାକୁ ମିଳେ । ବୃହତ୍ ଶକ୍ତିଗଣ ପଡ଼ୋଶୀ ଦେଶମାନଙ୍କ ମଧ୍ୟରେ ବିଦ୍ୱେଷଭାବ ସୃଷ୍ଟିକରି କୌଣସି ଏକ ପକ୍ଷକୁ ମାରଣାସ୍ତ୍ର ଯୋଗାଇ ସେଥିରୁ ଫାଇଦା ଉଠାଉଛନ୍ତି । ଏଣୁ ଜଗତୀକରଣ ପାଇଁ ଏପରି ଆଇନ ପ୍ରଣୟନ ହେବା ଦରକାର ଯେପରି ସାମ୍ରାଜ୍ୟବାଦର ପୁନରୁତ୍ଥାନ ନ ଘଟେ ।

ପୁନଶ୍ଚ ଜଗତୀକରଣ ଆଳରେ କୌଣସି ଏକ ଦେଶର ମୂଳ ସଂସ୍କୃତିକୁ ବିଲୋପ କରିବା ଅନୁଚିତ । ଏହା ହେଲେ ସମ୍ପୃକ୍ତ ଦେଶବାସୀ ବିଦ୍ରୋହ କରିବା ସୁନିଶ୍ଚିତ । ସମ୍ବାଦପତ୍ରରୁ ଜଣାଯାଏ ଯେ ଭାରତ ସରକାର ଶିକ୍ଷା ନିମନ୍ତେ ମେଧାବୀ ଛାତ୍ରଛାତ୍ରୀଙ୍କ ବିଦେଶ ଗମନକୁ ରୋକିବା ପାଇଁ ଭାରତରେ ହାଭାର୍ଡ଼ ବିଶ୍ୱବିଦ୍ୟାଳୟ ପରି ଆନ୍ତର୍ଜାତିକ ଖ୍ୟାତିସମ୍ପନ୍ନ ବିଶ୍ୱବିଦ୍ୟାଳୟ ଗୁଡ଼ିକର ଶାଖା ଆମ ଦେଶରେ ଖୋଲିବାକୁ ସ୍ଥିର କରୁଛନ୍ତି । ଏତଦ୍ୱାରା ପାଶ୍ଚାତ୍ୟ ଶିକ୍ଷା ଓ ସଂସ୍କୃତି ଆମ ପିଲାଙ୍କୁ ସମ୍ପୂର୍ଣ୍ଣ କବଳିତ କରିବ । ଏହା ଆଦୌ ଅଭିନନ୍ଦନୀୟ ନୁହେଁ । ଅନ୍ୟପକ୍ଷରେ ଆମ ଦେଶର ଦିଲ୍ଲୀ ଓ ଜବାହାରଲାଲ ନେହେରୁ ବିଶ୍ୱବିଦ୍ୟାଳୟର ଶାଖା ପାଶ୍ଚାତ୍ୟ ଦେଶମାନଙ୍କରେ ଖୋଲିବାକୁ ସେମାନେ ଅନୁମତି ଦେବେ କି ? ଏ ସମସ୍ତ ଦୃଷ୍ଟିରୁ ଦେଶର ସ୍ୱାର୍ଥ, ସଂସ୍କୃତି ତଥା ସମ୍ମାନକୁ ବଜାୟ ରଖି ଜଗତୀକରଣ ପ୍ରସଙ୍ଗ ଚିନ୍ତା କାର୍ଯ୍ୟକାରୀ କରିବା ବାଞ୍ଛନୀୟ ।

(ସମାଜ, ୨ ଅଗଷ୍ଟ, ୨୦୦୧ ରେ ପ୍ରକାଶିତ)

# ଭାରତୀୟ ସମାଜର ଅବକ୍ଷୟିତ ମୂଲ୍ୟବୋଧ

ଭାରତର ମୌଳିକ ଚିନ୍ତାଧାରାରେ ଯେଉଁ ଧର୍ମ ସଂହତି ଓ ମୈତ୍ରୀର ସଦଭାବ ଥିଲା ତାହା କ୍ରମଶଃ ଅବକ୍ଷୟ ହୋଇ ବିଲୁପ୍ତ ପ୍ରାୟ । ରାଜନୈତିକ ପରିବର୍ତ୍ତନ, ପାଶ୍ଚାତ୍ୟ ଚିନ୍ତାଧାରାର ଅନୁପ୍ରବେଶ ତଥା ଶିଳ୍ପ ବିପ୍ଳବରେ ଅତୀତର ସନାତନ ମୂଲ୍ୟବୋଧ ଅପସରି ଯାଇଛି । ତ୍ୟାଗ ପରିବର୍ତ୍ତେ ଭୋଗ ସମାଜରେ ପ୍ରାଧାନ୍ୟ ଲାଭ କରିଛି । ଗାନ୍ଧିଜୀ ଅହିଂସା ଅସ୍ତ୍ରରେ ପ୍ରତାପୀ ଇଂରେଜ ସରକାରଙ୍କୁ ଦେଶରୁ ତଡ଼ିଲେ, କିନ୍ତୁ ସ୍ୱାଧୀନତା ପରେ ଦେଶରେ ଦୈନନ୍ଦିନ ଜୀବନରେ ହିଂସାର ପ୍ରାଦୁର୍ଭାବ ଅତିମାତ୍ରାରେ ବଢ଼ିଛି । ଆଜିର ଯୁବକ ଅସାମାଜିକ ବ୍ୟକ୍ତିଙ୍କ ଦ୍ୱାରା ପରିଚାଳିତ ହୋଇ ଅନ୍ତର୍ଘାତୀ କାର୍ଯ୍ୟରେ ଲିପ୍ତ । ଭାରତୀୟ ସମାଜ ଆଜି ଜାତିଆଣ ଭାବ, ଧର୍ମାନ୍ଧତା, ବର୍ଣ୍ଣଗତ ଗୋଷ୍ଠୀ, ଭାବ, ଭାଷା ବୈଷମ୍ୟ ପ୍ରଭୃତି ବିଚ୍ଛିନ୍ନତାବାଦକୁ ଶ୍ରେଷ୍ଠ ସ୍ଥାନ ଦେଇଛି । ସଂକ୍ଷେପରେ କହିବାକୁ ଗଲେ, ଗାନ୍ଧିଜୀଙ୍କ ସ୍ୱପ୍ନର ଭାରତ ହିଂସା, ଦୁର୍ନୀତି, ଭ୍ରଷ୍ଟାଚାର, ପ୍ରିୟାପ୍ରୀତି ତୋଷଣ ଓ ଶୋଷଣର ଦେଶରେ ପରିଣତ ହୋଇଛି । ଭାରତୀୟ ସମାଜ ବର୍ତ୍ତମାନ ଏକ ବସ୍ତୁବାଦୀ ସମାଜର ରୂପ ନେଇଛି । ଅର୍ଥର ଶକ୍ତି ଆଗରେ ନୈତିକ ଶକ୍ତି ପରାଭବ ମାନିଛି । ଭାରତୀୟ ସମାଜର ବିଶ୍ୱାସ ଯେ ଯାହାର ଅର୍ଥବଳ ଅଛି ତା ପକ୍ଷେ ଅସମ୍ଭବ ବି ସମ୍ଭବ ହୋଇପାରେ । ଅର୍ଥ ବଳରେ ସ୍କୁଲ କଲେଜରେ ପ୍ରବେଶ, ଉପଯୁକ୍ତ ଯୋଗ୍ୟତା ନଥାଇ ପଦୋନ୍ନତି ଓ ଚାକିରି, ଜଘନ୍ୟ ଅପରାଧରୁ ମୁକ୍ତି, ଏପରିକି ଅଯୋଗ୍ୟ କନ୍ୟା ପାଇଁ ଯୋଗ୍ୟ ବରପାତ୍ର ଯୋଗାଡ଼ କରାଯାଇପାରେ । ପୁନଶ୍ଚ, ମୁକୁଟ ମଣ୍ଡିତ ରାଜପଦ କେବଳ ଅର୍ଥଦ୍ୱାରା ହିଁ ସମ୍ଭବପର । ରାଜନୈତିକ ଦୁର୍ନୀତି ଆମ ସାମାଜିକ ଜୀବନକୁ ଏପରି କଳୁଷିତ କରି ଦେଲାଣି ଯେ ଭାରତୀୟ ସାଧାରଣ ଜୀବନରୁ ମୂଲ୍ୟବୋଧର ଅବକ୍ଷୟ ଘଟିଲାଣି ଓ ବ୍ୟକ୍ତି ଆତ୍ମକୈନ୍ଦ୍ରିକ ପଶୁତ୍ୱ ଲାଭ କରି କୁଷ୍ଠବ୍ୟାଧି ଗ୍ରସ୍ତ ଓ ସମାଜର ବିଚ୍ଛିନ୍ନ ଅବୟବ ସଦୃଶ ।

ଭାରତୀୟ ସମାଜ ବର୍ତ୍ତମାନ ବହୁଦ୍ୱାର ଛକରେ ଦଣ୍ଡାୟମାନ । କେଉଁ ମୂଲ୍ୟବୋଧ ଆଶ୍ରୟରେ ଜୀବନଯାତ୍ରା ସୁଲଭ ହେବ ତାହା ନିର୍ଣ୍ଣୟ କରିବାକୁ ଅସମର୍ଥ । ବ୍ୟକ୍ତିର ମୂଲ୍ୟବୋଧ ସମାଜପକ୍ଷେ ସର୍ବଦା ଗ୍ରହଣୀୟ ନୁହେଁ କାରଣ, ଏହା ବ୍ୟକ୍ତି କୈନ୍ଦ୍ରିକ ସ୍ୱାର୍ଥ ସମ୍ମିଳିତ ଓ ସମାଜ ବିରୋଧୀ ରୂପ ଧାରଣ କରିବା ସମ୍ଭବ । ଏଣୁ ମୂଲ୍ୟବୋଧ ଏପରି ହେବା ଉଚିତ ଯାହାକି ବ୍ୟକ୍ତି ଓ ସମାଜ ପକ୍ଷେ ଗ୍ରହଣୀୟ, ଯାହା ଚିରନ୍ତନ ସତ୍ୟ, ତା'ର ମୂଲ୍ୟବୋଧ ଦେଶ କାଳ ପାତ୍ରର ସର୍ବଦା ଉର୍ଦ୍ଧ୍ୱରେ ।

ଚିରନ୍ତନ ମୂଲ୍ୟବୋଧକୁ ଆମେ ତିନୋଟି ଭାଗରେ ବିଭକ୍ତ କରିପାରୁ ପ୍ରଥମତଃ ବ୍ୟକ୍ତି ଚରିତ୍ରର

ବିକାଶ ପାଇଁ ସତ୍ୟ, ଅହିଂସା, ନିୟମିତତା, ଶ୍ରମର ମର୍ଯ୍ୟାଦା, ଧୈର୍ଯ୍ୟ ଓ ସମତା । ଦ୍ୱିତୀୟତଃ, ସାମାଜିକ ପରିପ୍ରେକ୍ଷୀରେ ଭଦ୍ରତା, କୃତଜ୍ଞତା, ଅନ୍ୟ ପ୍ରତି କର୍ତ୍ତବ୍ୟ, ସହନଶୀଳତା, ସହଯୋଗିତା ଉପଯୁକ୍ତ ବୁଝାମଣା, ଦୟା ଓ ଅହିଂସାଦି ଗୁଣାବଳୀ । ତୃତୀୟତଃ, ବ୍ୟକ୍ତିଗତ ସ୍ୱାର୍ଥ ରହିତ ତଥା ପରୋପକାରାର୍ଥେ ତ୍ୟାଗ ଗୁଣାବଳୀ ଯଥା ଭ୍ରାତୃଭାବ, ତ୍ୟାଗ, କ୍ଷମା, ସହାନୁଭୂତି, ସେବା, ଆତିଥ୍ୟ, ନ୍ୟାୟ ଓ ସ୍ନେହ ଆଦିର ମୂଲ୍ୟବୋଧ ।

ବ୍ୟକ୍ତି ସମାଜର କେନ୍ଦ୍ରବିନ୍ଦୁ । ପୁନଶ୍ଚ ବ୍ୟକ୍ତି ସମାଜ ଉଭୟ ଉଭୟର ପରିପୂରକ । ପ୍ରତ୍ୟେକ ବ୍ୟକ୍ତିକୁ ନେଇ ସମାଜ । ଏଣୁ ବ୍ୟକ୍ତିର ମୂଲ୍ୟବୋଧ, ଚିନ୍ତାଧାରା, ବିଶ୍ୱାସ ସମାଜର ଅଗ୍ରଗତି ଓ ସଂସ୍କୃତି ଚିକାଶର ପରିଚାୟକ । ଜାତୀର ଜନକ ମହାତ୍ମାଗାନ୍ଧୀଙ୍କ ମୌଳିକ ଶିକ୍ଷାର ମୂଳ ଲକ୍ଷ୍ୟ ଥିଲା ବ୍ୟକ୍ତିର ବିକାଶ ଦ୍ୱାରା ହିଁ ସମାଜର ଅବକ୍ଷୟ ରୋକିବା ସମ୍ଭବପର । ଋଗ୍‌ବେଦର ପବିତ୍ର ବାଣୀ ଭାରତର ପୁରାତନ ମୂଲ୍ୟବୋଧକୁ ଉଜ୍ଜୀବିତ କରୁ, ଏହା ହିଁ ଅନୁଚିନ୍ତା ।

*ସଂଗଚ୍ଛଧ୍ୱଂ ସଂବଦଧ୍ୱମ୍ ସଂବୋ ମନାଂସିଜାନତାମ୍*
*ଦେବାଭାଗଂ ଯଥାପୂର୍ବେ ସଂଜାନାନାମୁପାସତେ ॥*



*(ସମାଜରେ ପ୍ରକାଶିତ)*

# ଦେଶରେ ନାରୀ ନିର୍ଯାତନା କାହିଁକି ?

ଆମେ ଏକ ଘଟଣାବହୁଳ ଶତାବ୍ଦୀ ଅତିକ୍ରମ କରି ନୂତନ ଶତାବ୍ଦୀରେ ପାଦ ଦେଉଛୁ । ବିଗତ ଶହେ ବର୍ଷ ମଧ୍ୟରେ ପୃଥିବୀର ରାଜନୈତିକ ତଥା ସାମାଜିକ ଚିତ୍ର ସମ୍ପୂର୍ଣ୍ଣ ଓଲଟି ଯାଇଛି । ଏହି ଶତାବ୍ଦୀରେ ଘଟିଯାଇଛି ବିଶ୍ୱବ୍ୟାପୀ ଦୁଇ ଦୁଇଟି ମହାସମର । ଏହି ମହାସମର ମଣିଷ ଜାତିକୁ ପରସ୍ପର ପ୍ରତି ନିକଟତର କରିଛି, ଭୌଗଳିକ ପରିସୀମାକୁ ଭାଙ୍ଗିଦେଇ ବିଶ୍ୱନାଗରିକତାର ଆଭିମୁଖ୍ୟ ସୃଷ୍ଟି କରିଛି । ମଣିଷ ଏବେ ଜାତି, ଧର୍ମର ଆବେଷ୍ଟନୀ ମଧ୍ୟରେ ନିଜକୁ ଆବଦ୍ଧକରି ରଖିବାକୁ ଚାହେଁନା । ତା'ର ଗତି ବିଶ୍ୱପରିବାର ଗଠନ ଦିଗରେ । କବି ମନୋରମା ମହାପାତ୍ରଙ୍କ ଭାଷାରେ -

*ମଣିଷ ମଣିଷ ଭିତରେ ମୋ ଆଖି     ଦେଖିପାରେ ନାହିଁ ଭେଦ*
*ପ୍ରତି ମଣିଷର ଧମନୀରେ ଲେଖା     ଲାଲ ଶୋଣିତର ବେଦ ।।*

ପୁନଶ୍ଚ, ଏ ଶତାବ୍ଦୀ ମଣିଷ ଜାତିକୁ ପ୍ରେରଣା ଦେଇଛି ଶୋଷଣ ଓ ପରାଧୀନତା ବିରୋଧରେ ସଂଗ୍ରାମ କରିବା ପାଇଁ । ସାମନ୍ତବାଦ ଓ ସାମ୍ରାଜ୍ୟବାଦର ବିଲୋପ ହୋଇ ତାରି କବର ଉପରେ ପ୍ରତିଷ୍ଠିତ ହୋଇଛି ଗଣତନ୍ତ୍ର ଓ ସାମ୍ୟବାଦ । ଏହି ଶତାବ୍ଦୀର ମଧ୍ୟଭାଗରେ ସୋଭିଏଟ୍ ୟୁନିୟନ ଆନ୍ତର୍ଜାତିକ କ୍ଷେତ୍ରରେ ଏକ ମହାଶକ୍ତି ରୂପେ ଅଭ୍ୟୁଦୟ ହୋଇ ବିଲୟ ହୋଇଛି । ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟାର ଅଭୂତପୂର୍ବ ଅଗ୍ରଗତି ଘଟିଛି । ଭାରତ ପକ୍ଷରେ ସ୍ୱାଧୀନତା ପ୍ରାପ୍ତିର ପ୍ରଥମ ତିନୋଟି ଦଶନ୍ଧି ସୁବର୍ଣ୍ଣ ଯୁଗ କହିଲେ ଅତ୍ୟୁକ୍ତି ହେବନାହିଁ; କିନ୍ତୁ ପରବର୍ତ୍ତୀ ଦୁଇ ଦଶନ୍ଧିରେ ଦେଶ ବହୁ ସମସ୍ୟା ଓ ସଙ୍କଟ ଦେଇ ଗତିକରୁଛି । ଅନ୍ୟାନ୍ୟ ସମସ୍ୟାଗୁଡ଼ିକ ମଧ୍ୟରୁ ସାମାଜିକ ସମସ୍ୟା ଅତି ଉତ୍କଟ ରୂପ ଧାରଣ କରିଛି । ଏ ଦେଶରେ ବର୍ତ୍ତମାନ ପ୍ରାଚୀନତା ଓ ଆଧୁନିକତା ମଧ୍ୟରେ ସଂଘର୍ଷ ଚାଲିଛି ।

ଅମେ ନିରପେକ୍ଷ ଭାବେ ବିଚାରକଲେ ନିଶ୍ଚୟ ଅନୁଭବ କରିବା ଯେ ଗତ ଅର୍ଦ୍ଧଶତାବ୍ଦୀ ମଧ୍ୟରେ ନାରୀ ପୂର୍ବାପେକ୍ଷା ସ୍ୱାଧୀନତା ପାଇଛି ଏବଂ ବିଭିନ୍ନ କ୍ଷେତ୍ରରେ ପୁରୁଷ ସହ ସମକକ୍ଷ ହେବାପାଇଁ ସୁବିଧା ଓ ସୁଯୋଗ ପାଇଛି । କେତେକ କ୍ଷେତ୍ରରେ ମଧ୍ୟ ପ୍ରମାଣ କରିଦେଇଛି ଯେ ନାରୀ ପୁରୁଷ ଅପେକ୍ଷା କୌଣସି ଗୁଣରେ ନ୍ୟୁନ ନୁହେଁ । ବିଶ୍ୱବିଦ୍ୟାଳୟ ପରୀକ୍ଷାମାନଙ୍କରେ ପ୍ରଥମ ଦଶ ଜଣଙ୍କ ମଧ୍ୟରୁ ପ୍ରାୟ ଛଅ, ସାତଜଣ ମହିଳା । ବିଭିନ୍ନ ଉଚ୍ଚ ପ୍ରତିଯୋଗିତାମୂଳକ ପରୀକ୍ଷାରେ ମଧ୍ୟ ନାରୀ କୃତିତ୍ୱ ହାସଲ କରି ପ୍ରଶଂସିତ ହେଉଛି । ସାହିତ୍ୟ, କଳା ତଥା ରାଜନୀତି କ୍ଷେତ୍ରରେ ନିଜର ବୈଶିଷ୍ଟ୍ୟ ପ୍ରତିପାଦନ କରୁଛି । ନାରୀ ସମାଜର ଏ ପ୍ରଗତି ସତ୍ତ୍ୱେ ନାରୀ ନିର୍ଯାତିତ ହେଉଛି କାହିଁକି ? ପ୍ରତ୍ୟହ

ସମ୍ବାଦପତ୍ରର ପୃଷ୍ଠା ଲେଉଟାଇଲେ ଧର୍ଷଣ, ବଧୂହତ୍ୟା ଆଦି ସମ୍ବାଦ ଦେଖିବାକୁ ମିଳେ । ସରକାର ନାରୀ ନିର୍ଯାତନା ରୋକିବା ପାଇଁ ଆଇନ୍ ପ୍ରଣୟନ କରିଛନ୍ତି, ନିର୍ଯାତନା ପାଇଁ 'ଶାଶୁ ହାତକଡ଼ି, ନଣନ୍ଦ ବେଡ଼ି' ଦଣ୍ଡର ବି ଗଣ ମାଧ୍ୟମରେ ପ୍ରଚାର ହେଉଛି । ଏ ସବୁ ପ୍ରକାର ଆଇନ୍ ଅପରାଧ ରୋକିବାକୁ ବିଫଳ ହୋଇଛି । ଏଣୁ ନାରୀ ସମାଜ ପୁରୁଷ ସମାଜର ସାହଚର୍ଯ୍ୟରେ ନିମ୍ନୋକ୍ତ କେତେକ ବିଷୟପ୍ରତି ଦୃଷ୍ଟିଦେଇ ବିହିତ ପଦକ୍ଷେପ ନେଲେ ସଂପ୍ରତି ସମସ୍ୟା ଗୁଡ଼ିକର ସମାଧାନର ଦିଗ ଉଜ୍ଜ୍ୱଳ ହେବ ବୋଲି ଆଶା ପ୍ରକାଶ କରାଯାଏ ।

(କ) ଦିନଥିଲା ସମାଜରେ ବାଲ୍ୟବିବାହର ପ୍ରଚଳନ ଥିଲା । ବାର, ତେର ବର୍ଷର ଝିଅଟିଏ ଅନ୍ୟ ପରିବାରକୁ ଯାଇ ସେଇ ପରିବାରର ଏକ ସଦସ୍ୟ ରୂପେ ନିଜକୁ ମିଳେଇ ନେଉଥିଲା । ତାକୁ ଅନେକ ସମୟରେ ଦୁଃଖକଷ୍ଟ, ପରୀକ୍ଷା ଦେଇ ଗତି କରିବାକୁ ପଡୁଥିଲା ସତ; କିନ୍ତୁ ତତ୍‌ପ୍ରତି ସେ ଭ୍ରୂକ୍ଷେପ କରୁନଥିଲା । ସେ ବୟସ ବି ଥିଲା ଗଠନମୂଳକ (Formative) ସମୟ । ପୁନଶ୍ଚ, ଝିଅ ଶାଶୁଘରକୁ ଯିବାବେଳେ ପିତାମାତା ଝିଅ କିପରି ନୂତନ ପରିବାରରେ ସୁଖ ଶାନ୍ତି ପାଇବ, ଆଦରଣୀୟା ହେବ, ସେଥିପାଇଁ ଅନେକ ସଦୁପଦେଶ ଦେଉଥିଲେ । ତା'ର ଏକ ଉଦାହରଣ ଦେଲେ ଅତ୍ୟୁକ୍ତି ହେବନାହିଁ ବୋଲି ମନେହୁଏ ।

ଝିଅକୁ କହୁଥିଲେ : *ସମସ୍ତଙ୍କୁ ମିଷ୍ଟ କଥା କହିବୁ ଲୋ, ନୂଆବୋହୂ,*
*ଆଗେ ସବୁ ବାସି କାମ ସାରିବୁ ଲୋ, ନୂଆବୋହୂ,*
*ମନଦେଇ ଶାଶୁ କଥା ଶୁଣିବୁ ଲୋ, ନୂଆବୋହୂ,*
*ଶ୍ୱଶୁର କଥାକୁ ଏଡ଼ି ନ ଦେବୁ ଲୋ, ନୂଆବୋହୂ* (ଏସ୍.ଏ. ହଗିଦ୍)

ଝିଅ ଏ ଉପଦେଶଗୁଡ଼ିକ ଅମୃତବାଣୀ ପରି ଅକ୍ଷରେ ଅକ୍ଷରେ ପାଳନ କରୁଥିଲା । ଫଳରେ ତାକୁ ପାରିବାରିକ ଅଶାନ୍ତି ମଧ୍ୟଦେଇ ଗତି କରିବାକୁ ପଡୁନଥିଲା । ଏବେ ଝିଅ ଶାଶୁ ଘରକୁ ଯାଉଛି ପ୍ରାୟ କୋଡ଼ିଏରୁ ପଚିଶ ବର୍ଷ ବୟସ ମଧ୍ୟରେ । ତା'ର ଗଠନମୂଳକ ବୟସ (Formative age) ନଥାଏ । ସେ ଭାବେ ମୁଁ ଯାହା ଶିଖିଛି, ଯାହା ଜାଣିଛି, ସବୁ ଠିକ୍ । ଅଜାଆଈ, ବାପାମା' ପୁରୁଣାକାଳିଆ, ମରହଟିଆ । ସେମାନଙ୍କ କଥା ଶୁଣିବାକୁ ଝିଅ ନାରାଜ । ଏଣେ ଶାଶୁଘରେ ଅନେକ ବୋହୂଙ୍କ ଇଚ୍ଛା ଘରବାହାରେ ସମୟ ବିତାଇବାକୁ । ନଗର, ସହରମାନଙ୍କରେ ସନ୍ଧ୍ୟାରେ ବନ୍ଧୁମିଳନ ଓ ସୁବିଧା ଥିଲେ ସମୟ କ୍ଲବରେ କଟେ ଏବଂ ଗୃହକୁ ଫେରି ନିତ୍ୟକର୍ମପରେ ରାତ୍ରିର ବିଳମ୍ବ ପ୍ରହର ପର୍ଯ୍ୟନ୍ତ ଟି.ଭି ଦେଖା ଚାଲେ । ଏଣୁ ପରଦିନ ନିଦ ଭାଙ୍ଗୁ ଭାଙ୍ଗୁ ଦିନ ଦି ଘ'ଡ଼ି । ପରିବାରର ଜରାଗ୍ରସ୍ତ ଶାଶୁ, ଶ୍ୱଶୁର ସକାଳୁ ଉଠି ହନ୍ତସନ୍ତ । ଏବେ ପୁଣି ଚାକର, ଚାକରାଣୀର ଅଭାବ ଏବଂ ସେମାନଙ୍କ କାମରେ ଅନିୟମିତତା । ଶାଶୁ ମନେପଡ଼େ ତା'ର ନୂଆବୋହୂ ଦିନର କଥା । ମନ ବିଦ୍ରୋହୀ ହୋଇଉଠେ । ଏ ପାରିବାରିକ

ଅଶାନ୍ତି ପାଇଁ ବୋହୂ ସମ୍ପୂର୍ଣ୍ଣରୂପେ ଦାୟୀ ନୁହେଁ । ଏଥିରେ ପୁଅ ମଧ ଅନେକାଂଶରେ ଦାୟୀ କିନ୍ତୁ ପୁଅକୁ କହିବାକୁ ବାପମା'ଙ୍କ ସାହସ ନଥାଏ କାଳେ ସେ ସେମାନଙ୍କଠାରୁ ଦୂରେଇଯିବ ବୋଲି । ଏ ରୋଗ ଗାଁ ଗହଳକୁ ବି ବ୍ୟାପିଲାଣି । ଗାଁର ଶିକ୍ଷିତ ପରିବାରରେ ବି ଏ ଅଶାନ୍ତି । ଏ ଆଲୋଚନାଟି ପଢ଼ି ନାରୀସମାଜ ଭାବିବେନାହିଁ ଯେ ମୁଁ ନାରୀ ନିର୍ଯାତନାକୁ ସମର୍ଥନ କରୁଛି ଏବଂ ନାରୀ ପ୍ରଗତି ଓ ସ୍ୱାଧୀନତାକୁ ବିରୋଧ କରୁଛି । ଏ ଲେଖାଟି ସଂପ୍ରତି ସମାଜର ବାସ୍ତବ ଘଟଣା ଉପରେ ଆଧାରିତ । ମୁଁ ୧୯୪୫ ସାଲରୁ ନାରୀ ସ୍ୱାଧୀନତା ସପକ୍ଷରେ ଯୁକ୍ତି ବାଢ଼ି ଆସିଛି । ତତ୍କାଳୀନ ପ୍ରଚଳିତ ବାଲ୍ୟବିବାହ ବିରୋଧରେ ଏବଂ ବିଧବା ବିବାହ ସପକ୍ଷରେ ସାମାଜିକ ଚେତନା ସୃଷ୍ଟି କରିବାରେ କାର୍ଯ୍ୟକରି ବିରୋଧର ସମ୍ମୁଖୀନ ହୋଇଛି । ଏବେ ଭୁଶୁଡ଼ି ପଡୁଥିବା ପାରିବାରିକ ଜୀବନକୁ ସଜାଡ଼ିବା ମୋ ଲକ୍ଷ୍ୟ । ପରିବାରରେ ଶାନ୍ତି ଓ ସୌହାର୍ଦ୍ଦର ବାତାବରଣ ସୃଷ୍ଟି କରିବାରେ ନାରୀର ଭୂମିକା ମୁଖ୍ୟ ଅଟେ ।

(ଖ) ଦ୍ୱିତୀୟତଃ, ଏବେ ପରିବାର କହିଲେ ବୁଝାଯାଏ ସ୍ୱାମୀ ସ୍ତ୍ରୀ ଓ ସେମାନଙ୍କ ସନ୍ତାନସନ୍ତତି । ବିବାହପରେ ପୁଅ ମୂଳ ପରିବାରରୁ ବିଚ୍ଛିନ୍ନ ହୋଇ ସ୍ୱତନ୍ତ୍ରଭାବେ ଜୀବନଯାପନ କରିବାକୁ ଚାହେଁ ଏବଂ ଯୌଥ ପରିବାରରୁ ଦୂରେଇଯାଏ । ଏଥିରେ ପୁଅର ଭୂମିକା ମୁଖ୍ୟ ଥିଲେ ବି ଯୌଥପରିବାରର କୋପଦୃଷ୍ଟି ପଡ଼େ ବୋହୂ ଉପରେ । ପରିବାରରେ ଅଶାନ୍ତିର ବାତାବରଣ ସୃଷ୍ଟି ହୁଏ । ଏହି ଅଶାନ୍ତି ଅନେକ ସମୟରେ ଜଘନ୍ୟରୂପ ଧାରଣ କରିଥାଏ । ପୁନଶ୍ଚ, ଭାରତବର୍ଷରେ କୃଷିଭିତ୍ତିକ ସମାଜ କ୍ରମଶଃ ଶିଳ୍ପ-ଭିତ୍ତିକ-ସମାଜର ରୂପ ନେବାଫଳରେ ବହୁକାଳରୁ ପ୍ରଚଳିତ ଯୌଥ ପରିବାର ଭାଙ୍ଗିଯାଉଛି । ଚାକିରି ବା ବ୍ୟବସାୟ ପାଇଁ ଦୂରରେ ରହୁଥିବା ପରିବାର ସଦସ୍ୟଗଣ ଏକାଠି ହେବାପାଇଁ କ୍ୱଚିତ ସମୟ ପାଆନ୍ତି । ଏହି ଅର୍ଥଭିତ୍ତିକ ସାମାଜିକ ପରିବର୍ତ୍ତନ ସହ ପରିଚିତ ନଥିବା ବୃଦ୍ଧ ପିତାମାତା ସମାଜର ପୂର୍ବ ଚଳଣିକୁ ସ୍ମରଣ କରି ଅଯଥା ଅଶାନ୍ତିର ବାତାବରଣ ସୃଷ୍ଟି କରନ୍ତି । ଏ ସ୍ଥଳରେ ପୁଅବୋହୂର କର୍ତ୍ତବ୍ୟ ସେମାନେ ଦୂରରେ ଥିଲେ ବି ପିତାମାତା ଓ ମୂଳ ପରିବାର ସହ ସୁସମ୍ପର୍କ ରଖି ପାରିବାରିକ ସମସ୍ୟା ସମାଧାନ ନିମନ୍ତେ ସାହାଯ୍ୟ ଓ ସହଯୋଗ କରିବା ଉଚିତ । ଏତଦ୍ୱାରା ପରସ୍ପର ମଧ୍ୟରେ ସ୍ନେହ ଓ ମମତା ରକ୍ଷା କରାଯାଇ ପାରିବ ଏବଂ ବୋହୂ ଅଯଥା ବଦନାମରୁ ମୁକ୍ତି ପାଇବ ।

(ଗ) ତୃତୀୟତଃ, ବଜାର ଭିତ୍ତିକ ଅର୍ଥନୀତିରେ ଉତ୍ପାଦିତ ଦ୍ରବ୍ୟର ବିକ୍ରୟ ପାଇଁ ନାରୀକୁ ପ୍ରଚାର ମାଧ୍ୟମ ରୂପେ ବ୍ୟବହାର କରାଯାଇଛି । ଟି.ଭି. ଖୋଲିଲେ ପରଦାରେ ନାରୀର ନଗ୍ନରୂପ ଓ ପ୍ରଚାର ଶୈଳୀ ଯୁବପ୍ରାଣକୁ ଆକୃଷ୍ଟ କରିବାସହ ସେମାନଙ୍କ ମନରେ କାମଉଦ୍ଦୀପନା ସୃଷ୍ଟିକରେ । ଏ ଯୋଗୁଁ ଧର୍ଷଣ ତଥା ଯୌନ ବ୍ୟଭିଚାର ବଢ଼ିବାରେ ଲାଗିଛି । ଅର୍ଥ ଉପାର୍ଜନ ଲାଳସାରେ ଯେଉଁମାନେ ମଡ଼େଲ ସାଜୁଛନ୍ତି ବା ବିଜ୍ଞାପନ ପ୍ରଚାର କରୁଛନ୍ତି ସେହି ନାରୀମାନେ ଦେଶ ତଥା ନାରୀସମାଜର ହିତଦୃଷ୍ଟିରୁ ସଂଯମ ଅବଲମ୍ବନ କରିବା ଅତ୍ୟନ୍ତ ଆବଶ୍ୟକ । ସରକାର ତଥା ନାରୀ ସଂଗଠନ ଗୁଡ଼ିକ ଉତ୍ପାଦନକାରୀ

ଶିଳ୍ପ ସଂସ୍ଥାସହ ଆଲୋଚନାକରି ଏ ଦିଗରେ ପଦକ୍ଷେପ ନେବା ଉଚିତ।

(ଘ) ଚତୁର୍ଥତଃ, ନାରୀ ନିର୍ଯାତନା ଦେଶରେ ବଢ଼ିବାର କାରଣ ହେଲା ଭାରତବର୍ଷରେ ନୈତିକତାର ଅଧଃପତନ ଘଟିଛି। ଶ୍ରେୟଃ ଅପେକ୍ଷା ପ୍ରେୟଃର ଆଦର ବଢ଼ିଛି। ରାତେରାତ ଧନୀ ହେବାର ନିଶା ଘାରୁଛି। ତ୍ୟାଗ ଅପେକ୍ଷା ଭୋଗର ପ୍ରବୃତ୍ତି ଅଧିକ ମାତ୍ରାରେ ପ୍ରକାଶ ପାଉଛି। ଦାରୁ ଓ ଦାରା ଭୋଗର ପ୍ରଧାନ ବସ୍ତୁରୂପେ ବିବେଚିତ ହୁଏ। କ'ଣ କଲେ ନାରୀ ଏହି ନର-ଦାନବମାନଙ୍କ ଠାରୁ ରକ୍ଷା ପାଇପାରିବ ତା ର ଉପାୟ ତାକୁ ହିଁ ସ୍ଥିର କରିବାକୁ ପଡ଼ିବ। ପୁନଶ୍ଚ, ବିବାହପରି ଏକ ପବିତ୍ର ଧର୍ମକାର୍ଯ୍ୟରୁ କିପରି ଅଧିକ ଧନ ସଂଗ୍ରହ କରିହେବ, ଏବେ ସେଥିପାଇଁ ପୁରୁଷ ସମାଜ ବିଭିନ୍ନପନ୍ଥା ଅନୁସରଣ କରେ। କେବଳ ଧନ ଲୋଭରେ ବଧୂହତ୍ୟାର ବହୁ ଦୃଷ୍ଟାନ୍ତ ସମାଜରେ ଦେଖିବାକୁ ମିଳେ। ଏହି ଘୃଣ୍ୟ ବ୍ୟାଧିକୁ ରୋକିବାପାଇଁ ନାରୀସମାଜକୁ ଶପଥ ନେବାକୁ ହେବ ଯେ, ଯୌତୁକ ଦାବି କରୁଥିବା ପୁରୁଷକୁ ସେମାନେ ବିବାହ କରିବେ ନାହିଁ ଏବଂ କନ୍ୟାର ପିତାମାତା ବି ସେଥିପାଇଁ ଦୃଢ଼ ପ୍ରତିଜ୍ଞ ହେବେ। ନାରୀ ସମାଜ ନିଜେ ଯୌତୁକ ବିରୋଧରେ ସଂଗ୍ରାମର ସ୍ୱର ଉତ୍ତୋଳନ ନ କଲେ ଯେତେ କଠୋର ଆଇନ କଲେ ବି ଯୌତୁକ ପାଇଁ ନାରକୀୟ ବଧୂହତ୍ୟାକୁ ରୋକାଯାଇ ପାରିବ ନାହିଁ। ପରିବର୍ତ୍ତିତ ସମୟ ଓ ସମାଜରେ ନାରୀ ତା'ର ସ୍ଥିତିକୁ କିପରି ସୁଦୃଢ଼ ରଖିପାରିବ ଏବଂ ନିର୍ଯାତନାରୁ ରକ୍ଷା ପାଇବ, ତତ୍‌ପ୍ରତି ମହିଳା ସଂଗଠନଗୁଡ଼ିକ ନାରୀମାନଙ୍କୁ ତାଲିମ ଦେବା ଉଚିତ। ଏତଦ୍‌ବ୍ୟତୀତ, ନାରୀମାନଙ୍କୁ ନିଜର ଅଧିକାରପ୍ରତି ସଚେତନ କରାଇବା ସହ ପରିବାରରେ ସେମାନଙ୍କ କର୍ତ୍ତବ୍ୟପ୍ରତି ଅଧିକ ସଚେତନ କରାଇବା ଆବଶ୍ୟକ ଅଟେ। ଭାରତବର୍ଷର ରକ୍ଷଣଶୀଳ ସମାଜ ତଥା ନବ୍ୟସମାଜ ମଧ୍ୟରେ ନାରୀ ସଂଗଠନ ଗୁଡ଼ିକ ସେତୁରୂପେ କାର୍ଯ୍ୟ କରନ୍ତୁ। ଏତଦ୍ୱାରା ନାରୀ ନିର୍ଯ୍ୟାତନା ସ୍ୱତଃ ହ୍ରାସ ପାଇବ। ପ୍ରତ୍ୟେକ ନାରୀ ହୃଦୟଙ୍ଗମ କରନ୍ତୁ ଏବଂ ଦେଖାଇ ଦିଅନ୍ତୁ ଯେ ଗୃହ ଶାନ୍ତି ଓ ସୁଖର କେନ୍ଦ୍ର ସ୍ଥଳ। ଏହି ଲକ୍ଷ୍ୟରେ ଭକ୍ତକବି ମଧୁସୂଦନ ଲେଖିଥିଲେ :

*ବୈକୁଣ୍ଠ ସମାନ ଆହା ଅଟେ ସେହି ଘର,*
*ପରସ୍ପର ସ୍ନେହ ଯହିଁ ଥାଏ ନିରନ୍ତର।*

*(ସମାଜ, ୩ ଡ଼ିସେମ୍ବର, ୨୦୦୦ରେ ପ୍ରକାଶିତ)*

# ଜାତୀୟ ଚରିତ୍ର ଗଠନ କରିବା କିପରି ?

କଲିକତା ମହାନଗରୀର ଏକ ଜନାକୀର୍ଣ୍ଣ ରାଜରାସ୍ତା । ଜଣେ ସଂଭ୍ରାନ୍ତବଂଶୀୟ ବ୍ୟକ୍ତି ନିଜ ମୋଟର କାର ନିକଟରେ ରାସ୍ତାକଡ଼ରେ ଛିଡ଼ା ହୋଇଛନ୍ତି ବ୍ୟସ୍ତ ଓ ବିବ୍ରତ ମନରେ । ଡ୍ରାଇଭର ଗାଡ଼ିର ଇଞ୍ଜିନକୁ ସଜାଡ଼ିବାକୁ ଆପ୍ରାଣ ଚେଷ୍ଟା କରୁଛି କିନ୍ତୁ ତା'ମନରେ ବି ହତାଶ ମନୋଭାବ । ବୈଶାଖ୍ ମଧ୍ୟାହ୍ନର ଆତପରେ ଜନଗହଳି କ୍ରମେ କମି ଆସୁଛି । ଏତିକିବେଳେ ସେଇ ରାସ୍ତାରେ ଯାଉଥିଲେ ଦୁଇଜଣ ଶ୍ୱେତାଙ୍ଗ । ଦେଖିଲେ ରାସ୍ତାକଡ଼ରେ ଛିଡ଼ା ହୋଇଥିବା କାର୍‌ଟି ତାଙ୍କ ଦେଶର । ସେମାନଙ୍କ ମଧ୍ୟରୁ ଜଣେ ଥିଲେ ଅଟୋମୋବାଇଲ ଇଞ୍ଜିନିୟର । ଗାଡ଼ି ମାଲିକ ଓ ଡ୍ରାଇଭରଙ୍କ ଠାରୁ ସମସ୍ତ ବିବରଣୀ ବୁଝି ମାଲିକଙ୍କ ଅନୁମତି କ୍ରମେ କାର୍ ତଳେ ଶୋଇପଡ଼ି ଅଳ୍ପ ସମୟ ମଧ୍ୟରେ ଇଞ୍ଜିନଟି ସଜାଡ଼ି ଦେଲେ । ଗାଡ଼ିର ମାଲିକ କୃତଜ୍ଞତାର ସହ ପରିଚୟ ପଚାରିବାରୁ ସେ କହିଲେ, 'ଏ କାର୍‌ଟି ଆମେରିକାର ଏକ କମ୍ପାନୀ ଦ୍ୱାରା ନିର୍ମିତ । ନିଜ ଦେଶ କମ୍ପାନୀ ବଦନାମ ହେଉ, ଏ କଥା ସେମାନେ ଚାହାନ୍ତି ନାହିଁ ।' ଏ ଦୃଷ୍ଟାନ୍ତରୁ ଶ୍ୱେତାଙ୍ଗଙ୍କ ଦେଶପ୍ରେମ, ଜାତୀୟତା ବୋଧ ତାଙ୍କ ଚରିତ୍ର ଉପରେ କେତେଦୂର ପ୍ରତିଫଳିତ, ସହଜେ ଅନୁମେୟ । ଏହା ଆମ ଦେଶବାସୀଙ୍କ ପକ୍ଷେ ଅନୁକରଣୀୟ ନୁହେଁ କି ?

ଜଣେ ଆମେରିକାନଙ୍କ ମନରେ ତାଙ୍କ ଦେଶ ଓ ଜାତି ପ୍ରତି ଏପରି ଶ୍ରଦ୍ଧା ଓ ସମ୍ମାନର ଭାବ ସୃଷ୍ଟି ହେଲା ଅଥଚ ଆମ ଦେଶବାସୀଙ୍କ ଦେଶ ଓ ଜାତିପ୍ରତି ବୀତସ୍ପୃହ ମନୋଭାବ କାହିଁକି ? ଏ ବିଷୟରେ ବିଶ୍ଳେଷଣ, ଅନୁଶୀଳନ କରିବା ଅତ୍ୟନ୍ତ ଜରୁରୀ ମନେହୁଏ । ଦରିଦ୍ରତା, ଅଜ୍ଞତା ତଥା ଦୀର୍ଘଦିନର ଦାସତ୍ୱରେ ଆମ ଚିନ୍ତାଶକ୍ତି ପଙ୍ଗୁ ହୋଇଯାଇଛି । ପୁନଶ୍ଚ ପାଶ୍ଚାତ୍ୟ ଦେଶର ବସ୍ତୁବାଦୀ ପ୍ରଭାବରେ ଆମେ ଆମର ନିଜସ୍ୱ ଆଦର୍ଶ, ସଂସ୍କୃତିକୁ ସଂପୂର୍ଣ୍ଣ ରୂପେ ଭୁଲି ଯାଇଛୁ । ଚଳିତ ଅର୍ଦ୍ଧଶତାବ୍ଦୀ ମଧ୍ୟରେ ରାଜନୈତିକ, ସାମାଜିକ, ଅର୍ଥନୈତିକ ତଥା ସାଂସ୍କୃତିକ କ୍ଷେତ୍ରରେ ଅଭୂତପୂର୍ବ ପରିବର୍ତ୍ତନ ଘଟିଛି । ନୈରାଶ୍ୟବାଦର ଛାୟା ଆମ ମନରେ ଘୋଟିଯାଇଛି । ଆମେ ଏବେ ପ୍ରତ୍ୟେକ ଦିଗରେ ଉଦାସୀନ । ଦୀର୍ଘ ସଂଗ୍ରାମ ପରେ ଦେଶ ରାଜନୈତିକ ପରାଧୀନତାରୁ ମୁକ୍ତ ହେଲା । ଦେଶର ସ୍ୱାଧୀନତା ପାଇଁ ଏ ଦେଶର ମହାନ ଦେଶପ୍ରେମୀ ଗଣ ନିଜର ସର୍ବସ୍ୱ ତ୍ୟାଗ କଲେ । କେତେଜଣ ନିଜର ଜୀବନ ବି ଉତ୍ସର୍ଗ କଲେ, ସେପରି ଏକ ତ୍ୟାଗର ଭୂମିରେ ଜାତୀୟ ଚରିତ୍ରର ଅବକ୍ଷୟ ହେଲା କିପରି, ଏହା ଅନୁଧ୍ୟେୟ ।

ବିଦେଶୀ ଶାସନର ଅବସାନ ପରେ ଏ ଦେଶର ନିର୍ବାଚିତ ପ୍ରତିନିଧିଗଣ ଶାସନ ଗାଦିକୁ ଆସିଲେ । ସେମାନେ ଶାସନ ଗାଦିକୁ ଭୋଗର ଆତ୍ମସ୍ଥଳୀ ମନେକଲେ । ଦେଶର ସ୍ୱାର୍ଥ ଅପେକ୍ଷା ବ୍ୟକ୍ତିଗତ ସ୍ୱାର୍ଥ ଉପରେ ପ୍ରାଧାନ୍ୟ ଦିଆଗଲା । ଏଣୁ ରାଜନୀତିକୁ ଆତ୍ମବୃଦ୍ଧିର ପ୍ରଧାନ ଆଧାର ରୂପେ

ବିଚାର କରାଗଲା । ଲୋକ ପ୍ରତିନିଧି ହେବାପାଇଁ ଗ୍ରାମ ପଞ୍ଚାୟତ ସ୍ତରରୁ ଆରମ୍ଭ କରି ଲୋକସଭା ପର୍ଯ୍ୟନ୍ତ ପ୍ରତିଯୋଗିତା ଚାଲିଲା ଏବଂ ସେଥିପାଇଁ ଅର୍ଥବଳ, ବାହୁବଳ, ପ୍ରୟୋଗ କରାଗଲା । ଏ ସମସ୍ତ କାର୍ଯ୍ୟକଳାପ ଜାତୀୟ ଚରିତ୍ର ସ୍ଖଳନପାଇଁ ଖୋରାକ୍ ଯୋଗାଇବାରେ ସାହାଯ୍ୟ କଲାନାହିଁ କି ?

ଦେଶର ସାମ୍ପ୍ରତିକ ସାମାଜିକ ସ୍ଥିତିକୁ ବିଚାର କରାଯାଉ । ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟାର ଅଭୂତପୂର୍ବ ଅଗ୍ରଗତି ଭାରତୀୟ ସାମାଜିକ ଜୀବନ ଉପରେ ପ୍ରଭୂତ ପ୍ରଭାବ ପକାଇଛି । ସମାଜ ଏବେ ସ୍ଥାଣୁ ନହେଁ ଗତିଶୀଳ । ବୃହତ୍ତମ ପୃଥିବୀ କ୍ଷୁଦ୍ରତମ ହୋଇଛି । ପ୍ରାଚ୍ୟ ପାଶ୍ଚାତ୍ୟର ମିଳନ ଘଟିଛି । ପୃଥିବୀର ଗଣମାଧ୍ୟମ ଗୁଡ଼ିକ ଶିକ୍ଷା, ସଂସ୍କୃତି, ବଳଣିର ଦେଶ ଦେଶ ମଧ୍ୟର ବିନିମୟ ନିମନ୍ତେ ପ୍ରମୁଖ ଭୂମିକା ଗ୍ରହଣ କରିଛନ୍ତି । ଏଇ ପରିପ୍ରେକ୍ଷୀରେ ପୁରାତନ ମୂଲ୍ୟବୋଧକୁ ସଂପୂର୍ଣ୍ଣ ସୁରକ୍ଷିତ କରିବା ସମ୍ଭବ ନୁହେଁ । ଏହା ସତ୍ତ୍ୱେ ବି ବସ୍ତୁବାଦୀ ସଭ୍ୟତାର ପ୍ରଭାବରେ ମାନବିକ ମୂଲ୍ୟବୋଧର ଅବକ୍ଷୟ ହେଉଛି କାହିଁକି ? ତାହା ବିଚାରଣୀୟ ।

ଦେଶର ଅର୍ଥନୀତି ଜାତୀୟ ଜୀବନକୁ ପ୍ରଭାବିତ କରିଥାଏ । ଅର୍ଥନୈତିକ ବିକାଶ ସହ ଜୀବନ ଧାରଣର ମାନ ନିବିଡ଼ ଭାବେ ସଂପୃକ୍ତ । ସମାଜ ବିଜ୍ଞାନୀଗଣ ଏହାକୁ ଦୁଇଟି ଦୃଷ୍ଟିକୋଣରୁ ବିଚାର କରନ୍ତି । ଗୋଟିଏ ହେଲା ଭୌତିକ ଦୃଷ୍ଟିକୋଣ ଓ ଅନ୍ୟଟି ହେଲା ଦାର୍ଶନିକ ଦୃଷ୍ଟିକୋଣ । ଦାର୍ଶନିକ ଦୃଷ୍ଟିକୋଣରେ ବ୍ୟକ୍ତିର ସ୍ୱାଧୀନ ଚିନ୍ତା ଚେତନା, ସାମାଜିକ କର୍ତ୍ତବ୍ୟ, ରାଷ୍ଟ୍ରପତି ଆନୁଗତ୍ୟ ଇତ୍ୟାଦି ବିଚାର କରାଯାଏ । ସଂପ୍ରତି ସମାଜରେ ଭୌତିକ ଅଭିବୃଦ୍ଧି ଉପରେ ପ୍ରାଧାନ୍ୟ ବଢ଼ିଛି । ଯେ ଯେନତେନ ପ୍ରକାରେଣ ରାତେରାତ ଧନ ଠୁଳ କରି ଧନିକ ଗୋଷ୍ଠୀର ପର୍ଯ୍ୟାୟଭୁକ୍ତ ହୋଇପାରୁଛି, ସେ ସମାଜରେ ସମ୍ମାନର ଅଧିକାରୀ । ଜ୍ଞାନ, ପାଣ୍ଡିତ୍ୟ ଏବେ ଧନର ବଶବର୍ତ୍ତୀ । ପ୍ରାଚୀନ ଓ ଅର୍ବାଚୀନ ସମାଜ ମଧ୍ୟରେ ଧନ ସୃଷ୍ଟି କରିଛି ବିରାଟ ବ୍ୟବଧାନ ।

ପ୍ରତ୍ୟେକ ଦେଶ ଓ ସମାଜର ନିଜର ଐତିହ, ସଂସ୍କୃତି ଓ ଜୀବନଦର୍ଶନ ଅଛି । ଜାତୀୟ ଚରିତ୍ର ଉପରେ ଏହାର ବଳିଷ୍ଠ ପ୍ରଭାବ ପଡ଼ିଥାଏ । ପାଶ୍ଚାତ୍ୟ ସଭ୍ୟତାର ବସ୍ତୁବାଦୀ ପ୍ରଭାବରେ ତଥା ରାଜନୈତିକ ଓ ସାମାଜିକ ପରିବର୍ତ୍ତନରେ ଏହା ଅବକ୍ଷୟ ଘଟିଛି । ଜାତୀୟ ଚରିତ୍ରକୁ କିପରି ପୁନର୍ବିନ୍ୟାସ କରିବା ଆମ ଆଗରେ ଏକ ବିରାଟ ପ୍ରଶ୍ନବାଚୀ ।

ବ୍ୟକ୍ତି ନେଇ ସମାଜ ଓ ସମାଜକୁ ନେଇ ଦେଶ । ଜାତୀୟ ଚରିତ୍ର ଗଠନ କରିବାକୁ ହେଲେ ପ୍ରଥମେ ବ୍ୟକ୍ତିର ଚରିତ୍ର ଗଠନ ଉପରେ ପ୍ରାଧାନ୍ୟ ଦିଆଯିବ । ଏହା ସମୟ ସାପେକ୍ଷ ସେଥିପାଇଁ ଯୋଜନାବଦ୍ଧ ଆଭିମୁଖ୍ୟ ଓ ଅସୀମ ଧୈର୍ଯ୍ୟ ଆବଶ୍ୟକ । ବ୍ୟକ୍ତି ବିଶେଷଙ୍କ କର୍ତ୍ତବ୍ୟ ନିଷ୍ଠା ଉପରେ ଏହାର ସଫଳତା ନିର୍ଭର କରେ । ଜାତୀୟ ଚରିତ୍ର ଗଠନକୁ ଭିତ୍ତିକରି ବିଭିନ୍ନ ଶିକ୍ଷା କମିଶନ ସୁଚିନ୍ତିତ ମୂଲ୍ୟବାନ ପରାମର୍ଶ ଦେଇଛନ୍ତି କିନ୍ତୁ ସେଗୁଡ଼ିକ କାର୍ଯ୍ୟକାରୀ କରିବାରେ ସରକାରଙ୍କ ଆନ୍ତରିକତା ନାହିଁ ।

ଜାତୀୟ ଚରିତ୍ର ଗଠନ ପାଇଁ ସର୍ବାଗ୍ରେ ଶିକ୍ଷାକୁ ପ୍ରାଧାନ୍ୟ ଦିଆଯିବ । ପାଠ୍ୟସୂଚୀ, ପାଠ୍ୟପୁସ୍ତକର

ବିଷୟ ବସ୍ତୁକୁ ନୂତନ ଆଭିମୁଖ୍ୟ ଦେଇ ଦେଶାତ୍ମବୋଧ, ଭ୍ରାତୃତ୍ୱ, ଆଧ୍ୟାତ୍ମିକତା ଓ ଧର୍ମ ନିରପେକ୍ଷତା, ଆତ୍ମଶୃଙ୍ଖଳା ଓ ଆତ୍ମସଂଯମ ତଥା ମହାପୁରୁଷ ମାନଙ୍କ ତ୍ୟାଗପୂତ ଜୀବନକୁ ଭିତ୍ତିକରି ପୁନର୍ବିନ୍ୟାସ କରାଯିବ। ଶିକ୍ଷାଦାନରେ ଶାଶ୍ୱତ ମୂଲ୍ୟବୋଧ ପ୍ରତି ଆକୃଷ୍ଟ ହେବା ପାଇଁ ଶୈକ୍ଷିକ ବାତାବରଣ ସୃଷ୍ଟି କରାଯିବ। ଶିଶୁର ଚରିତ୍ର ବିକାଶ ପାଇଁ ସତ୍ୟ, ଅହିଂସା, ସମୟାନୁବର୍ତ୍ତିତା ଶ୍ରମପ୍ରତି ସମ୍ମାନ, ପରିଷ୍କାର ପରିଛନ୍ନତା, ଧୈର୍ଯ୍ୟ ଓ ଆତ୍ମନିର୍ଭରଶୀଳତା ଉପରେ ଅଗ୍ରାଧିକାର ଦିଆଯିବ। ସମାଜରେ ସୌହାର୍ଦ୍ଦ୍ୟପୂର୍ଣ୍ଣ ଜୀବନଯାପନ ପାଇଁ ଭଦ୍ରତା, ସହନଶୀଳତା, ସହଯୋଗ, ଉତ୍ତମ ବୁଝାମଣା, ତ୍ୟାଗ ସେବାଦିର ଆବଶ୍ୟକତାକୁ ଶିଶୁ ହୃଦୟଙ୍ଗମ କରିବ। ଏପରି ଏକ ବଳିଷ୍ଠ ଭିତ୍ତିଭୂମି ଉପରେ ଶିକ୍ଷାସୌଧ ନିର୍ମାଣ କଲେ ଜାତୀୟ ଚରିତ୍ର ପରିପୁଷ୍ଟ ହେବ।

ଜାତୀୟ ଚରିତ୍ର ଗଠନରେ ଶିକ୍ଷକମାନଙ୍କ ଭୂମିକା ଅତି ଗୁରୁତ୍ୱପୂର୍ଣ୍ଣ। ଶିକ୍ଷକ ଶିକ୍ଷାଦାନକୁ କେବଳ ଚାକିରି ସର୍ବସ୍ୱ ମନେ ନକରି ଜାତି ଗଠନ ଦିଗରେ ସେମାନଙ୍କ ଭୂମିକା ଅତି ଗୁରୁତ୍ୱପୂର୍ଣ୍ଣ ବୋଲି ସେ ବିବେଚନା କରିବା ଉଚିତ। ସେଥିପାଇଁ ଶିକ୍ଷକ ନିଯୁକ୍ତି ବେଳେ ବ୍ୟକ୍ତି ବିଶେଷଙ୍କ ଶିକ୍ଷାଦାନ ପ୍ରତି କେତେଦୂର ଆନ୍ତରିକତା ଅଛି, ତତ୍‌ପ୍ରତି ଧ୍ୟାନ ଦିଆଯିବ। ଶିକ୍ଷକ ତାଲିମ କେନ୍ଦ୍ରରେ ଶିକ୍ଷକଙ୍କୁ ଶିକ୍ଷାଦାନପ୍ରତି ପ୍ରେରଣା ଓ ଉଦ୍ଦୀପନା ଦିଆଯିବ। ଶିକ୍ଷକ ହିଁ ଜାତୀୟ ଆଭିମୁଖ୍ୟ ପୂରଣ କରିବାରେ ସହାୟକ ହେବେ।

କଥାରେ ଅଛି, 'ରାଜାନୁଗତ ଧର୍ମ' ଅର୍ଥାତ୍ ଶାସକଙ୍କ ଚରିତ୍ର ଓ ଆଚରଣର ପ୍ରଭାବ ଦେଶବାସୀଙ୍କ ଉପରେ ପଡ଼ିଥାଏ। ଏଣୁ ଦେଶ ହିତୈଷୀ, ସେବାମନୋଭାବପନ୍ନ ଓ ସ୍ୱାର୍ଥତ୍ୟାଗୀ ବ୍ୟକ୍ତି ଯେପରି ଶାସନ ଗାଦିକୁ ଆସନ୍ତି ସେଥିପାଇଁ ନିର୍ବାଚନ ଆଇନରେ ଆବଶ୍ୟକୀୟ ସଂଶୋଧନ ଆଣିବା ଦରକାର। ଜାତୀୟ ଚରିତ୍ର ଗଠନ ପାଇଁ ଏହା ଅନିବାର୍ଯ୍ୟ ମନେହୁଏ।

ଜାତୀୟ ଚରିତ୍ର ଗଠନ ପାଇଁ ଏକ ସାମାଜିକ ବିପ୍ଳବ ଲୋଡ଼ା। ଇତିହାସ କହେ, ସବୁ କାଳରେ ସବୁ ଦେଶରେ ଏହି ବିପ୍ଳବର ଧ୍ୱଜା ଧରନ୍ତି ବୁଦ୍ଧିଜୀବି ଗୋଷ୍ଠୀ, ମଧ୍ୟବିତ୍ତ ଶ୍ରେଣୀ। କାରଣ ଅନ୍ୟ ଦୁଇଟି ଗୋଷ୍ଠୀ ମଧ୍ୟରୁ ଉଚ୍ଚ ଶ୍ରେଣୀ ନିଜର ଶ୍ରେଣୀ ସ୍ୱାର୍ଥପାଇଁ ଓ ନିମ୍ନ ଶ୍ରେଣୀ ଜୀବନ ସଂଗ୍ରାମରେ ସର୍ବଦା ବ୍ୟସ୍ତ। ଦେଶର ବୃହତ୍ତର ସ୍ୱାର୍ଥକୁ ଦୃଷ୍ଟିରେ ରଖି ଜାତୀୟ ଚରିତ୍ର ଗଠନ ଲକ୍ଷ୍ୟରେ ବୁଦ୍ଧିଜୀବୀ ଶ୍ରେଣୀ ଆଗେଇ ଆସନ୍ତୁ। ଇଂରେଜ କବି Walds Emersonଙ୍କ ଭାଷାରେ

"Not gold but only men can make,
A people great and strong,
Men who for truth and honour's sake,
Stand fast and suffer long."

(ସମ୍ବଳଶ୍ରୀ, ୧୯ ଜୁନ୍, ୧୯୯୬ ରେ ପ୍ରକାଶିତ)

# ନାରୀ ଜାଗରଣ ଓ ନିଶା ନିବାରଣ

ମହାତ୍ମା ଗାନ୍ଧି କହିଥିଲେ - "Where the danger is greatest, there is greatest need for pure ahimsa and pure non-violent power in the world resides in the hearts of our women folk." ନିଶା ନିବାରଣ ଆନ୍ଦୋଳନରେ ମଦଭାଟି ସମ୍ମୁଖରେ ପିକେଟିଂ କରିବା ପାଇଁ ଯେତେବେଳେ ସଂଗ୍ରାମୀ ବନ୍ଧୁ ଗଣ ଅନିଛା ମନୋଭାବ ପ୍ରକାଶ କଲେ, ଗାନ୍ଧିଜୀ ନାରୀମାନଙ୍କ ସହଯୋଗରେ ନିଶା ନିବାରଣକୁ ଆଗେଇ ନେଲେ ଏବଂ ସେଥିରେ ସଫଳ ହେଲେ । ଭାରତବର୍ଷରେ ନାରୀ ଆନ୍ଦୋଳନ କେବଳ ପୁରୁଷଙ୍କ ସହ ସମାନ ରାଜନୈତିକ ଅଧିକାର ପାଇବାରେ ସୀମିତ ନଥିଲା ସେମାନଙ୍କ ଆଭିମୁଖ୍ୟ ଥିଲା ସାମାଜିକ ଅଧିକାର ପାଇବା ଓ ସାମାଜିକ ବଂ.. ଙ୍କ ବିରୁଦ୍ଧରେ ସଂଗ୍ରାମ କରିବା ।

ପଶ୍ଚିମ ଓଡ଼ିଶାର ଆଦିବାସୀ ଅଧ୍ୟୁଷିତ ଅଞ୍ଚଳର ଆଦିବାସୀ ମହିଳାମାନଙ୍କର ମହୁଲି ମଦ ପୁନଃ ପ୍ରଚଳନ ବିରୁଦ୍ଧରେ ଏବେ ଏକ ଆନ୍ଦୋଳନ ତେଜି ଉଠିଛି । ସେମାନଙ୍କ ଯେଉଁ ଚେତନା ସୃଷ୍ଟି ହୋଇଛି ଏହା ଗଣତନ୍ତ୍ରର ଏକ ଶୁଭ ସୂଚନା । ସରକାର ଲୋକଙ୍କର, ଲୋକଙ୍କ ପାଇଁ ଓ ଲୋକଙ୍କ ଦ୍ୱାରା ଏକଥା 'ଗଣ' ଅନୁଭବ କଲେଣି । ଆଦେଶ ବା ଆଇନରେ କୌଣସି ବିଷୟ ଲୋକଙ୍କ ଉପରେ ଜୋର ଜବରଦସ୍ତି ଲଦି ଦେବା ଆଉ ସମ୍ଭବପର ନୁହେଁ ।

ତିନି ଦଶନ୍ଧି ତଳେ ଉତ୍ତରାଖଣ୍ଡରେ ନିଶା ବିରୁଦ୍ଧରେ ଅନୁରୂପ ଏକ ଆନ୍ଦୋଳନ ତେଜି ଉଠିଥିଲା । ଉତ୍ତରାଖଣ୍ଡର ସ୍ତ୍ରୀ ଲୋକମାନେ ଯେତେବେଳେ ଦେଖିଲେ ଯେ ସେମାନଙ୍କ ସ୍ୱାମୀ ମାନେ ନିଶାସେବନ କରିବା ଫଳରେ ପାରିବାରିକ ଜୀବନର ଅଧୋଗତି ଘଟୁଛି ଏବଂ ଆର୍ଥିକ ସମସ୍ୟା ସହ ମାନସିକ ଅଶାନ୍ତି ଭୋଗ କରୁଛନ୍ତି, ସେମାନେ ନିଜ ଭବିଷ୍ୟତ ବଂଶଧରଙ୍କୁ ଏହି ନିଶା ବ୍ୟାଧି କବଳରୁ ମୁକ୍ତ କରିବା ପାଇଁ ନିଷ୍ପତ୍ତି ନେଲେ । ସେମାନଙ୍କ ଆଭିମୁଖ୍ୟ ଥିଲା ବ୍ୟକ୍ତି କୁ ନିଶା ନିବାରଣରୁ ବିରତ କରିବା ଏବଂ ନିଶାଦ୍ରବ୍ୟ ପ୍ରଚଳନ ବନ୍ଦ କରିବା ପାଇଁ ସରକାରଙ୍କ ଉପରେ ଚାପ ଦେବା । ନିଷ୍ପତ୍ତି ହେଲା, ପ୍ରଥମେ ସ୍ତ୍ରୀ ନିଜ ସ୍ୱାମୀଙ୍କୁ ନିଶାସେବନରୁ ଦୂରେଇ ରଖିବା ପାଇଁ ପଦକ୍ଷେପ ନେବ । ଯେଉଁ ଦିନ ସ୍ୱାମୀ ନିଶା ପାନ କରିବେ, ସେଦିନ ସେ ଗୃହରେ ଅନଶନ କରିବ ଏବଂ ଗ୍ରାମର ମହିଳାଗଣ ତାଙ୍କ ଗୃହ ସମ୍ମୁଖରେ ପ୍ରତୀକ ଅନଶନ କରିବେ । ଗାନ୍ଧିଜୀଙ୍କ ଆଦର୍ଶ ପଥ ଅନୁସରଣ କରି ମଦ୍ୟପ ପୁରୁଷଙ୍କ ଉପରେ ନୈତିକ ପ୍ରଭାବ ପକାଇବେ । ଦ୍ୱିତୀୟ କର୍ଯ୍ୟକ୍ରମ ହେଲା, ମଦଭାଟି ସମ୍ମୁଖରେ

ପିକେଟିଂ କରିବା । ସ୍ତ୍ରୀ ଲୋକମାନେ ଛୋଟଛୁଆଙ୍କୁ ପିଠିରେ ଝୁଲାଇ ପିକେଟିଂ ପାଇଁ ଆବଶ୍ୟକ ସ୍ଥଳେ ଦଶରୁ ପନ୍ଦର କିଲୋମିଟର ବାଟ ସକାଳୁ ଚାଲି ଯାଇ ସନ୍ଧ୍ୟାରେ ଘରକୁ ଫେରିଲେ । ନାରୀଜାତିର ଏତାଦୃଶ କାର୍ଯ୍ୟାବଳୀରେ ମଦ୍ୟପ ପୁରୁଷଗଣ ଲଜ୍ଜିତ ହେଲେ ଏବଂ ମଦ୍ୟପାନ ନ କରିବାକୁ ଅଙ୍ଗୀକାରବଦ୍ଧ ହେଲେ । ଆନ୍ଦୋଳନର ଚାପ ଏପରି ଧାରଣ କଲା ଯେ ସରକାର ଉତ୍ତରାଖଣ୍ଡର ଛଅଟି ଜିଲ୍ଲାରେ ନିଶା ନିବାରଣ କରିବାକୁ ବାଧ ହେଲେ । ସରକାରଙ୍କ କାର୍ଯ୍ୟାକଳାପ ବିରୁଦ୍ଧରେ ମଦ ଠିକାଦାରଗଣ ହାଇକୋର୍ଟରେ ଆଶ୍ରୟ ନେଲେ ଏବଂ ମକଦ୍ଦମା ରାୟ ମଧ ସେମାନଙ୍କ ସପକ୍ଷରେ ଗଲା । ମହିଳାମାନେ ସେମାନଙ୍କ ଲକ୍ଷ୍ୟ ହାସଲରେ ଅଟଳ ରହିଲେ । ଆନ୍ଦୋଳନର ରୂପ ବିରାଟ ଆକାର ଧାରଣ କଲା । ଶେଷରେ ସରକାର ଅନନ୍ୟୋପାୟ ହୋଇ ନିଶା ନିବାରଣ ପାଇଁ ଅର୍ଡିନାନ୍ସ ଜାରି କଲେ ଏବଂ ଆସେମ୍ବ୍ଲିର ପରବର୍ତ୍ତୀ ଅଧିବେଶନରେ ଏ ସମ୍ବନ୍ଧୀୟ ଏକ ବିଲ୍ ଆଗତ କଲେ । ଦେଶର ସଂସ୍କୃତି ତଥା ପରିବାରର ଆର୍ଥିକ ଅବକ୍ଷୟକୁ ରୋକିବା ନାରୀ ଜାଗରଣ ଦ୍ୱାରା ହିଁ ସମ୍ଭବ ହେଲା ।

ଗାନ୍ଧିଜୀ ନିଶାଦ୍ରବ୍ୟ ସେବନର ସଂପୂର୍ଣ୍ଣ ବିରୋଧୀ ଥିଲେ । ସେ କହନ୍ତି ଯେ ଭାରତବର୍ଷର ଜଳବାୟୁରେ ନିଶା ସେବନ କରିବା ଅନାବଶ୍ୟକ । ନିଶାସେବକ ଜାତିକୁ ଧ୍ୱଂସ ପଥରେ ଆଗେଇ ନେବା ବ୍ୟତୀତ ଅନ୍ୟ କିଛି ମଙ୍ଗଳ ସାଧନ କରିବ ନାହିଁ । ନିଶାସେବନ ହିଁ ରୋମ ସାମ୍ରାଜ୍ୟର ପତନର କାରଣ ହେଲା । ଏଣୁ ଉତ୍ତମ ଜୀବନଯାପନ ପାଇଁ ନିଶାଦ୍ରବ୍ୟ ସେବନ ତ୍ୟାଗ କରିବାକୁ ହେବ । ପୁନଶ୍ଚ ମହାତ୍ମା ଗାନ୍ଧୀ ଅତି ଦୃଢ଼ୋକ୍ତିରେ କହିଥିଲେ,

If I was appointed director for one hour for all India, the first thing I would do would be to close without compensasion all the liquor shops

ଗାନ୍ଧି ଜୟନ୍ତୀ ପାଳନ ଅବସରରେ ମହାତ୍ମାଙ୍କ ପ୍ରଦର୍ଶିତ ମାର୍ଗ ଅନୁସରଣ କଲେ ତାଙ୍କ ପ୍ରତି ଯଥୋଚିତ ଶ୍ରଦ୍ଧାଞ୍ଜଳି ହେବ ଏବଂ ସେହି ମହାମାନବଙ୍କ ଉପଦେଶ ଓ ବାଣୀ ନାରୀ ସମାଜକୁ ପଥ ପ୍ରଦର୍ଶନ କରୁ ଏହି ପବିତ୍ର ଦିବସରେ ଏହା ହିଁ କାମନା ।



(ଅଗ୍ନିଶିଖା, ୨ ଅକ୍ଟୋବର, ୧୯୯୬ ରେ ପ୍ରକାଶିତ)

# ଯୁଗକୁ ଯୁଗ ଏହି ମତେ

ଆମେ ଏକ ଘଡ଼ିସନ୍ଧି ମୁହୂର୍ତ୍ତରେ ପହଞ୍ଚିଛେ । ଅସ୍ଥିର ମନା, କିଂକର୍ତ୍ତବ୍ୟ ବିମୂଢ଼ । ଆମେ ଆଗକୁ ଯିବା ନା ପଛକୁ, ବର୍ତ୍ତମାନକୁ ଆବୋରି ନେବା ନା ଅତୀତକୁ ପ୍ରତ୍ୟାବର୍ତ୍ତନ କରିବା, ଆମ ଐତିହ୍ୟ, ସଂସ୍କୃତି, ଉତ୍କୃଷ୍ଟ ନା ପାଶ୍ଚାତ୍ୟ ଦେଶରୁ ମାଡ଼ି ଆସୁଥିବା ସଂସ୍କୃତି ଉତ୍କୃଷ୍ଟ, ଅପସଂସ୍କୃତିର ସଂଜ୍ଞା କଣ ? ଆମେ ଏକବିଂଶ ଶତାବ୍ଦୀର ସୁସଭ୍ୟ ମଣିଷ ବୋଲି ଡିଣ୍ଡିମ ପିଟୁଥିଲେ ହେଁ ଆମର ଆଦିମ ଅନ୍ତଃରୂପର ପରିବର୍ତ୍ତନ ହୋଇଛି କି ? ଆମ ଆଗରେ ଏପରି ଅନେକ ପ୍ରଶ୍ନବାଚୀ ।

ଏସବୁ ପ୍ରଶ୍ନର ସମାଧାନ ମୂଳକ ଉତ୍ତର ଯାହାହେଉ ନା କାହିଁକି, ସେ ସବୁ ବ୍ୟକ୍ତି - ସର୍ବସ୍ୱ ଯଦିଓ ସେ ସବୁ ବ୍ୟକ୍ତିର ଗଭୀର ଆତ୍ମଚିନ୍ତନରୁ ନିସୃତ ହୋଇପାରେ, ତାହା ସର୍ବସାଧାରଣଙ୍କ ଉପରେ ଜୋର ଜବରଦସ୍ତି ଲଦିଦେଇ ପାରିବା କି ? ସମସ୍ତେ ଏହା ବିନା ବାକ୍ୟ ବ୍ୟୟରେ ଗ୍ରହଣ କରିବାକୁ ବାଧ କି ? ଏଣୁ ଶ୍ରେୟଃ ପ୍ରେୟଃ ମଧ୍ୟରେ ଯୁଗ ଯୁଗ ଧରି ସଂଘର୍ଷ ଚାଲିଛି ଏବଂ ଭବିଷ୍ୟତରେ ଚାଲବ । ଶ୍ରେୟଃ ଅପେକ୍ଷା ପ୍ରେୟଃ ଜନସାଧାରଙ୍କ ଦ୍ୱାରା ବିଶେଷଭାବେ ଆଦୃତ । କେବଳ ମୁଷ୍ଟିମେୟ ବ୍ୟକ୍ତି ଶ୍ରେୟଃକୁ ଆଶ୍ରୟ କରି ପ୍ରଚାର ଓ ପ୍ରସାରରେ ପ୍ରୟାସୀ ହୋଇଥାନ୍ତି । ସମାଜ ଉପରେ ତାର ପ୍ରଭାବ ସାମୟିକ । ଆମେ ପୁରାଣ ଯୁଗକୁ ଫେରିଯାଉ । ରାମାୟଣ ଯୁଗର ପୁରୁଷୋତ୍ତମ ରାମଙ୍କ ଆଦର୍ଶ, ସତ୍ୟାନୁରାଗ, ତ୍ୟାଗର ଆଦର୍ଶ ମଣିଷ ଉପରେ ପ୍ରଭାବ ପକାଇଛି କି ? ବରଂ ଅତ୍ୟାଚାରୀ ରାବଣର କାମ, କ୍ରୋଧ, ଲୋଭ, ନାରୀହରଣ ଓ ଧର୍ଷଣ ଆଦିର ପ୍ରଭାବ ସମାଜକୁ ସନ୍ତୁଳନ କରିଛି । ଆଜି ଘରେ ଘରେ କୈକେୟୀ ଓ ମନ୍ଥରା; ସେମାନଙ୍କ ଦ୍ୱାରା ପରିବାରର ଶାନ୍ତିମୟ ଜୀବନ ଧ୍ୱସ୍ତବିଧ୍ୱସ୍ତ । ସମାଜର ଦୈନନ୍ଦିନ ଜୀବନରେ ଏ ଦୁଇଟିର ନାମର ପ୍ରାଧାନ୍ୟ ବଢ଼ିଛି । ଅତ୍ୟାଧୁନିକ ନାରୀ ସମାଜ ଆଜି ରାମଙ୍କୁ ନାରୀ ଉତ୍ପୀଡ଼କର ଆଖ୍ୟା ଦିଏ । ସେମାନଙ୍କ ଅଭିଯୋଗ ଯେ ସୀତାଙ୍କୁ ବନବାସକୁ ପଠାଗଲା ଗର୍ଭାବସ୍ଥାରେ । ତାଙ୍କର ସତୀତ୍ୱ ପରୀକ୍ଷା କରାଗଲା କିନ୍ତୁ ରାମଙ୍କୁ ପରୀକ୍ଷା କରାଗଲା ନାହିଁ କାହିଁକି ? ସେ ବି ତ ନାରୀମାନଙ୍କ ସମ୍ପର୍କରେ ଆସିଥିଲେ । ଏ ସବୁ ପୁରୁଷ - ପ୍ରଧାନ ସମାଜର କରାମତି । ଏକବିଂଶ ଶତାବ୍ଦୀରେ ନାରୀକୁ କ୍ରୀଡ଼ନକ ରୂପେ ବ୍ୟବହାର କରାଯାଉଛି ଏବଂ ସମାଜରେ ଯାହା ଅଘଟଣ ଘଟୁଛି ସବୁ ଦୋଷ ଲଦି ଦିଆଯାଉଛି ନାରୀ ଉପରେ । ଏସବୁ ଆମର ଐତିହ୍ୟ ମଧ୍ୟରୁ ସମାଜ ଗ୍ରହଣ କଲା କେବଳ ପ୍ରେୟଃକୁ ଶ୍ରେୟଃକୁ ନୁହେଁ । ମହାଭାରତ ଯୁଗରେ ମଧ୍ୟ ସେହିପରି ମିଶ୍ରିତ ଘଟଣାମାନ ଘଟିଛି, ଯାହର ପ୍ରଭାବ ଯୁଗ ଯୁଗ ଧରି ସମାଜ ଉପରେ ପଡ଼ିଛି ।। ଗୀତାର ପ୍ରଥମ

ଅଧ୍ୟାୟ ପ୍ରାରମ୍ଭରେ ସ୍ନେହ, ସହାନୁଭୂତି ପରିବର୍ତ୍ତେ ପ୍ରଦର୍ଶିତ ହୋଇଛି ହିଂସା, ଦ୍ୱେଷ । ମହାଭାରତ ଯୁଦ୍ଧର ପ୍ରସ୍ତୁତି ଶେଷ ହୋଇଛି । ଯୁଦ୍ଧ ଆସନ୍ନ । ଧନୁର୍ଦ୍ଧର ଅର୍ଜ୍ଜୁନ ଅସ୍ତ୍ରତ୍ୟାଗ କରି ବସିଛନ୍ତି, ଅପର ପକ୍ଷରେ ଦୀକ୍ଷାଗୁରୁ ଭାଇବନ୍ଧୁ ଜ୍ଞାତି କୁଟୁମ୍ବଙ୍କୁ ଦେଖି ଶ୍ରେଷ୍ଠଜ୍ଞାନୀ, କୁଶଳୀ ରାଜନୈତିକ ଶ୍ରୀକୃଷ୍ଣ ତାଙ୍କୁ ଦାର୍ଶନିକତତ୍ତ୍ୱ ଆତ୍ମା ଓ ଶରୀର ଉପରେ ବୁଝାଇ ଯୁଦ୍ଧ କରିବାକୁ ପରାମର୍ଶ ଦେଉଛନ୍ତି । ଠିକ୍ ଏତିକିବେଳେ ସ୍ୱାର୍ଥ ଓ ମୋହର ବଶବର୍ତ୍ତୀ ହୋଇ ରାଜା ଧୃତରାଷ୍ଟ୍ର ଅନୁଭବ ବି କରି ପାରିନାହାନ୍ତି ରାଜଧର୍ମ ତଥା ପରିବାରର ମୁଖ୍ୟଭାବେ ତାଙ୍କର କର୍ତ୍ତବ୍ୟ କଣ ? ମାନଗୋବିନ୍ଦ ଦୁର୍ଯ୍ୟୋଧନଙ୍କ ଉକ୍ତି "ବିନା ଯୁଦ୍ଧେ ନ ଦେବି ମୁଁ ସୂଚ୍ୟଗ୍ରମେଦିନୀ" ଆଜି ଏହିବାକ୍ୟ ସମାଜରେ ପ୍ରତ୍ୟେକ ସ୍ତରରେ ଝଙ୍କୃତ । ପୈତୃକ ସଂପତ୍ତିର ବିଭାଜନରେ ଏହି ଦୃଷ୍ଟାନ୍ତ ଦେବାର ଦେଖାଯାଏ । ସମାଜରେ ଶକୁନିର ଅଭାବ ନାହିଁ । ଭାଇ ଭାଇ ମଧ୍ୟରେ କଳହ, ମନାନ୍ତର ସୃଷ୍ଟି କରିବାରେ ସେମାନେ ଧୁରନ୍ଧର । ଗୋଟିଏ ଦ୍ରୌପଦୀର ବସ୍ତ୍ରହରଣର ଛାପ ସମାଜରେ ପଡ଼ି ଆଜି ଶହ ଶହ ଦ୍ରୌପଦୀର ବସ୍ତ୍ରହରଣ ହେଉଛି । ଶ୍ରୀକୃଷ୍ଣଙ୍କ ମହାଭାରତ ଯୁଦ୍ଧର ଲକ୍ଷ୍ୟ "ଯଦା ଯଦା ହି ଧର୍ମସ୍ୟ ଗ୍ଲାନିର୍ଭବତି ଭାରତ । ଅଭ୍ୟୁତ୍ଥାନମଧର୍ମସ୍ୟ ତଦାତ୍ମାନଂ ସୃଜାମ୍ୟହମ୍ ।" ଏ କଥା ସମାଜର କେତେଜଣ ହୃଦୟଙ୍ଗମ କରନ୍ତି । ଆଜିର ନାରୀ ସମାଜରେ ଶ୍ରୀକୃଷ୍ଣ ଲମ୍ପଟ, ଚରିତ୍ରହୀନ ବ୍ୟକ୍ତିରୂପେ ପରିଚିତ ।

ଆଜି ପ୍ରଶ୍ନଉଠେ, ଭାରତବର୍ଷକୁ ଅପସଂସ୍କୃତି ମାଡ଼ି ଆସୁଛି । ଆମର ଐତିହ୍ୟ, ପରମ୍ପରା, ସଂସ୍କୃତି ବିପର୍ଯ୍ୟସ୍ତ । ଏ ପ୍ରଶ୍ନ ଉଠେ ଶିକ୍ଷିତ, ବୁଦ୍ଧିଜିବୀ ମହଲରୁ । ଦେଶର କୋଟି କୋଟି ସାଧାରଣ ମଣିଷଙ୍କ ଏ ପରିବର୍ତ୍ତନ ପ୍ରତି ଧ୍ୟାନ ବି ନଥାଏ । ସମୟ - ସ୍ରୋତରେ ଯାହା ଆସେ ସେମାନେ ସାଦରେ ଗ୍ରହଣ କରିନିଅନ୍ତି । ଏପରିକି, ଯେଉଁ ବୁଦ୍ଧିଜୀବୀ ମହଲରେ ଏହି ପ୍ରତିକ୍ରିୟା ସୃଷ୍ଟି ହେଉଛି, ସେମାନେ ନିଜ ପରିବାରକୁ ମଧ୍ୟ ଏହି ସବୁରୁ ନିବୃତ୍ତ କରିବାକୁ ସମର୍ଥ ନୁହନ୍ତି । ସଭାସମିତିରେ ସେମାନେ ଯାହା ବଖାଣନ୍ତି ଶ୍ରୋତୃମଣ୍ଡଳୀ ଯଦିଓ ହୃଦୟଙ୍ଗମ କରନ୍ତି, ସେ ସବୁ ନିଜ ଗୃହରେ କାର୍ଯ୍ୟକାରୀ କରିବାକୁ ଅସମର୍ଥ ।

ଦୂରଦର୍ଶନ ପରଦାରେ 'ଫେସନ ସୋ'ର ପ୍ରଚାର ହେଉଛି । ପରିବାରର ସ୍ତ୍ରୀଲୋକ ଓ ପୁତ୍ରକନ୍ୟା ସେ ସବୁ ଦେଖି ସେପରି ପୋଷାକ କିଣିବାକୁ ବରାଦ କରୁଛନ୍ତି । ସେ ସବୁ ପୋଷାକ କିଣିବାକୁ ତଥା ପିନ୍ଧିବାକୁ ବାରଣ କରିବାକୁ ପରିବାରର କାହାରି ସାହସ ନାହିଁ । ଯଦିବା ଯେ କରୁଛି ସେ ଅସନ୍ତୋଷର ପାତ୍ର ହେଉଛି । ଟି.ଭି. ଏବେ ପ୍ରତ୍ୟେକ ପରିବାର ସୌଖିନ ଓ ଅତ୍ୟାବଶ୍ୟକ ପଦାର୍ଥ ହୋଇପଡ଼ିଛି । ଦୂରଦର୍ଶନର ପରଦାରେ ନାରୀ ଅର୍ଦ୍ଧନଗ୍ନ, ଶରୀର ପ୍ରଦର୍ଶନ କରି ଉତ୍ପାଦିତ ଦ୍ରବ୍ୟର ବିକ୍ରି ପାଇଁ ଗ୍ରାହକଙ୍କୁ ଆକୃଷ୍ଟ କରୁଛି । ପରିବାରର ଆବାଳବୃଦ୍ଧ ବନିତା ଏକତ୍ର ବସି ଏସବୁ ଉପଭୋଗ କରୁଛନ୍ତି । ବୟସ୍କ ବ୍ୟକ୍ତିର ପ୍ରତିକ୍ରିୟା ନିରର୍ଥକ ଏବଂ ତାକୁ କେହି ଗ୍ରହଣ କରିବାକୁ ରାଜି ନୁହନ୍ତି ବରଂ ବିରୋଧ କରୁଛନ୍ତି । କେବଳ ସେତିକି ନୁହେଁ ପାଶ୍ଚାତ୍ୟ ଦେଶରେ ନଗ୍ନ କ୍ଲବ ଖୋଲା ହେଲାଣି ଏବଂ ସେଇ କ୍ଲବକୁ ଯେ ଯିବ

ସେ ଲଙ୍ଗଳା ହୋଇ ଯିବ। ତା'ର ପ୍ରଭାବ ଦିନେ ଏ ଦେଶରେ ନ ପଡ଼ିବବୋଲି କହିବ କିଏ ? ଏଣୁ ସମୟକ୍ରମେ ଯାହା ଆସୁଛି ଜନତା ବିନା ଦ୍ୱିଧାରେ ତାହା ଗ୍ରହଣ କରି ଯାଉଛି । ଏବେ କେଉଁଟି ସଂସ୍କୃତି ଓ କେଉଁଟି ଅପସଂସ୍କୃତି ଦୁଇଟି ମଧ୍ୟରେ ସୀମାରେଖା ଟାଣିବା ଅସମ୍ଭବ ହୋଇପଡ଼ିଛି ।

ଆଉ ଏକ ପ୍ରସଙ୍ଗ ଉଠେ ଇଂରାଜୀ ଭାଷାର ଆଦର ନେଇ ଇଂରେଜମାନେ ଏ ଦେଶରୁ ଛାଡ଼ି ଯିବାର ଅର୍ଦ୍ଧ ଶତାବ୍ଦୀ ପରେ ପୂର୍ବାପେକ୍ଷା ଇଂରାଜୀ ଭାଷାର ଆଦର ବହୁ ପରିମାଣରେ ବଢ଼ିଛି । ଇଂରେଜ ଜାତି ତାଙ୍କ ଭାଷାକୁ ବିଶ୍ୱଭାଷାରେ ପରିଣତ କରିଛନ୍ତି । କାରଣ ଦିନଥିଲା, ସେମାନେ ଏପରି ଭୂଖଣ୍ଡର ଅଧିକାରୀ ଥିଲେ ଯେଉଁ ଭୂଖଣ୍ଡରେ କେବେ ସୂର୍ଯ୍ୟାସ୍ତ ହେଉନଥିଲା । ଏଣୁ ତାଙ୍କ ଭାଷାକୁ ଅଧିକୃତ ଅଞ୍ଚଳର ରାଜଭାଷା ରୂପେ ସେମାନେ ପ୍ରଚଳନ କରିଥିଲେ । ଏବେ ପୃଥିବୀର ଯେଉଁ ଅଞ୍ଚଳକୁ ଗଲେ ଲୋକଙ୍କ ସହ ସମ୍ପର୍କ ସ୍ଥାପନ ପାଇଁ ଇଂରାଜୀ ଭାଷା ହିଁ ମାଧ୍ୟମ ଅଟେ । ପୁନଶ୍ଚ ବୈଷୟିକ ଶିକ୍ଷାପାଇଁ ଇଂରାଜୀ ଭାଷା ଶିକ୍ଷା କରିବା ନିତାନ୍ତ ଦରକାର । କାରଣ ସେ ସମ୍ବନ୍ଧୀୟ ପୁସ୍ତକ ସବୁ ଇଂରାଜୀ ଭାଷାରେ ଲେଖାଯାଇଛି; ଯାହାର ଅନେକ ଶବ୍ଦ ଭାଷାନ୍ତର ବା ନିଜ ଭାଷାରେ ଅନୁବାଦ କରିବା ସମ୍ଭବ ନୁହେଁ । ଭାଷା ସହିତ ସଂସ୍କୃତିର ସମ୍ପର୍କ ନିବିଡ଼ । ଏଣୁ ଇଂରାଜୀ ଭାଷାକୁ ଆବୋରି ନେଲେ ସେମାନଙ୍କ ସଂସ୍କୃତିର ଛାପ ସ୍ୱତଃ ଦେଶ ଉପରେ ପଡ଼ିବ। ତାକୁ ଆମେ ବାରଣ କରିବା ସମ୍ଭବ ନୁହେଁ; କାରଣ ତାହା ଜୀବିକାର୍ଜ୍ଜନ ପାଇଁ ଆମକୁ ପଥ ପ୍ରଦର୍ଶନ କରୁଛି । ଏପରିସ୍ଥଳେ, ଶ୍ରେୟଃ ପ୍ରେୟଃ ଓ ସଂସ୍କୃତି, ଅପସଂସ୍କୃତି ମଧ୍ୟରେ ବାଛ ବିଚାରର ପ୍ରଶ୍ନ ବା ଉଠିବ କାହିଁକି ?

ସ୍ୱାଧୀନତାପରେ ଆମେ ଆମ ରୁଦ୍ଧଦ୍ୱାରକୁ ଉନ୍ମୁକ୍ତ କରିଛୁ । ବାହାରର ବାୟୁ ପ୍ରବେଶକୁ ଆମେ ରୋକି ପାରିବା ନାହିଁ । ଆମକୁ ଯାହା ଅପସଂସ୍କୃତି ଆସନ୍ତା କାଲି ଆମର ସଂସ୍କୃତିରେ ପରିଣତ ହେବ। ଇତିହାସର ସର୍ବଦା ପୁନରାବୃତ୍ତି ହୋଇଥାଏ। ଆମ ଦେଶର ସଂସ୍କୃତିକୁ ଅନ୍ୟ ଦେଶ ଅପସଂସ୍କୃତି ମଣିପାରେ । ଦିନ ଆସିବ ଆମ ସଂସ୍କୃତିକୁ ବି ସେମାନେ ଉପଯୁକ୍ତ ସମ୍ମାନ ଦେବେ। ଏହାର ସୂଚନା ଏବେ ବି ମିଳିଲାଣି । ଆମେରିକାରେ ଯୌଥ ପରିବାର ଓ ଏକ ପତ୍ନୀ ଗ୍ରହଣକୁ ସେମାନେ ଶ୍ରେୟଃ ବୋଲି ଚିନ୍ତା କରି କାର୍ଯ୍ୟକାରୀ କରିବାକୁ ଚାହିଁଲେଣି । ଭାଗବତ ବାଣୀ କହେ "ଯୁଗକୁ ଯୁଗ ଏହି ମତେ, ପରମାନନ୍ଦ ଏ ଜଗତେ" । ସବୁଥିଲା, ଅଛି ଓ ରହିବ। ଏ ଜଗତ ପରିବର୍ତ୍ତନଶୀଳ । ଏଣୁ ସାମୟିକ ପରିବର୍ତ୍ତନ ଅନିବାର୍ଯ୍ୟ ।



(ସମାଜ, ୧୫ ଜାନୁୟାରୀ, ୨୦୦୪ ରେ ପ୍ରକାଶିତ)

## ପାଠକେ କ'ଣ କୁହନ୍ତି

* ଆପଣଙ୍କ ଲେଖାଟି ସଂକ୍ଷିପ୍ତ, କିନ୍ତୁ ସାଂପ୍ରତିକ ପୃଥିବୀ ପରିମଣ୍ଡଳ ନିମନ୍ତେ ମାର୍ମିକ ହୋଇ ପାରିଛି.... । ଆପଣଙ୍କର ଯେଉଁସବୁ ରଚନା ଏଇଭଳି ଦୈନିକ ମାନଙ୍କର ପୃଷ୍ଠାରେ ପ୍ରକାଶିତ ହେଉଛି, ସେ ସମସ୍ତଙ୍କୁ ଏକତ୍ର ନିର୍ବାଚନ କରି ସାରିବା ପରେ ଏକ ସଂକଳନ କରାଯାଇ ପାରେ.... ।

ଡକ୍ଟର ପୂର୍ଣ୍ଣାନନ୍ଦ ଦାନୀ, ଅବସରପ୍ରାପ୍ତ ପ୍ରାଧ୍ୟାପକ (ଓଡ଼ିଆ)

ତା. ୦୭.୦୫.୨୦୦୩.

* କାଳର ଗତିରେ ହେଉ ବା ତୀବ୍ର ଆନ୍ଦୋଳନ ହେଉ, ଭାରତ ମାଟିରୁ ଇଂରେଜ ହଟିଗଲେ ସତ୍ୟ, ମାତ୍ର ଇଂରାଜୀ ହଟିନାହିଁ ବରଂ ତା'ର ଚେର ଅଧିକ ମଜଭୁତ ହୋଇ ଚାଲିଛି । ଇଂରାଜୀ ପ୍ରୀତି ଆମ ନିଜ ଭାଷାକୁ ଯେ ମ୍ଳାନ କରିଛି, ଏଥିରେ ସନ୍ଦେହ ନାହିଁ ।

ବୀରକିଶୋର ବାରିକ, ଭୁବନେଶ୍ୱର

ତା.୩୧.୧.୨୦୦୨

* 'କିଏ ଶୁଣିବ ହୋ ଆମେ ପାଠପଢ଼ି ହେଲୁ ନାଶ' ଲେଖାଟି ଚମତ୍କାର ହେଇଛି । ଏହା ଆମ ସମାଜର ଏକ ସାଂପ୍ରତିକ ଅବକ୍ଷୟ ପ୍ରତି ବଡ଼ ରୋଚକ ଢ଼ଙ୍ଗରେ ଅଙ୍ଗୁଳି ନିର୍ଦ୍ଦେଶ କରିଛି । ମେକ୍‌ଲେ ଶିକ୍ଷା ପଦ୍ଧତି ଦ୍ୱାରା ଆମର କେବଳ ସ୍ୱଭାବ ନଷ୍ଟ ହୋଇନାହିଁ, ସଂସ୍କୃତି ମଧ ନଷ୍ଟ ହୋଇଛି ।

ବିପିନ ବିହାରୀ ରାଉତ, ସହ ସଂପାଦକ, ରାଷ୍ଟ୍ରଦୀପ, କଟକ

ତା.୧ ୧୧.୦୮.୨୦୦୧

* ଆପଣଙ୍କ ଲେଖା 'ପୁଞ୍ଜିବାଦୀ ଅର୍ଥନୀତିର ନବକଳେବର' ପଢ଼ିଲି । ଉପସ୍ଥାପନାଟି ମୋତେ ମୁଗ୍ଧ କରିଦେଲା । ବିଚାର ଓ ନିଶ୍ଚିତ ଭାବରେ ଉଦାତ୍ତ ।.... । ଆମର ସମସ୍ତ ଶିକ୍ଷା ଜଗତ (ପ୍ରାଇମେରୀ ଠୁଁ ଆରମ୍ଭ କରି ବିଶ୍ୱବିଦ୍ୟାଳୟ ପର୍ଯ୍ୟନ୍ତ) ଯେ' ସ୍ଥାଣୁ ଓ ଆମ ଭାରତୀୟ ସମାଜର ବିରୋଧୀ ପାଲଟି ଯାଇଛି ତାହାର ମଧ ବିଶଦ ଆଲୋଚନା ଆବଶ୍ୟକ । ଏହି ସମସ୍ୟାର ସମ୍ମୁଖୀନ ହେବାକୁ ସ୍ୱାଧୀନତା ସଂଗ୍ରାମୀ ସନ୍ଥ ବିନୋବା 'ଆଚାର୍ଯ୍ୟ କୁଳ' ଗଠନ ଓ କାର୍ଯ୍ୟକାରିତା ଉପରେ ବହୁତ ଗୁରୁତ୍ୱ ଦେଇଥିଲେ ।

ବ୍ରଜସୁନ୍ଦର ଦାସ, ସ୍ୱାଧୀନତା ସଂଗ୍ରାମୀ, ଅନୁଗୁଳ

ତା.୫.୮.୨୦୦୧

* ରାଜ୍ୟର ପ୍ରଶାସନିକ, ଆର୍ଥିକ ଓ ରାଜନୈତିକ ଦୁର୍ଗତି ତଥା ଦୁର୍ନୀତି ସମ୍ବନ୍ଧୀୟ ପ୍ରକାଶିତ ପ୍ରବନ୍ଧ ମାଧ୍ୟମରେ ଓଡ଼ିଆବାସୀଙ୍କ ମନରେ ସଚେତନତା ସୃଷ୍ଟି ନିମିତ୍ତ ଆପଣଙ୍କ ଅବିରତ ପ୍ରଚେଷ୍ଟା ପାଇଁ

ମୋର ଆନ୍ତରିକ ଅଭିନନ୍ଦନ ଜଣାଉଛି ।

ଇଂ ସୌରେନ୍ଦ୍ର ପ୍ରହରାଜ, ଭୁବନେଶ୍ୱର
ତା.୧୨.୦୯.୨୦୦୩

* ସମାଜରେ ଆପଣଙ୍କ ଲିଖିତ 'ନବ୍ୟ ସାମନ୍ତବାଦର ଅଭ୍ୟୁଦୟ' ପଢ଼ିଲି । ଏହା ଏକ ଯୁଗ ଉପଯୋଗୀ ଲେଖା, ଯେଉଁଥିରେ କି ଦଳେ ଅମଣିଷଙ୍କ ବିରୁଦ୍ଧରେ ପ୍ରତିବାଦର ସ୍ୱର ସୁସ୍ପଷ୍ଟ । ଏ ପ୍ରତିବାଦ ଜଣେ ବ୍ୟକ୍ତିତର ନୁହେଁ - ସାରା ଦେଶର ବୁଦ୍ଧିଜୀବୀ ସମାଜର ।

ବାସୁଦେବ ଦାସ, ଭୁବନେଶ୍ୱ
ତା. ୨୧.୬.୨୦୦୮

* 'ଏକ ବିଂଶ ଶତାବ୍ଦୀର ସଂକଟ' ଶୀର୍ଷକ ପ୍ରବନ୍ଧ ପାଠକରି ଆନନ୍ଦିତ ହେଲି । ଏହା କେବଳ ଆମ ଦେଶକୁ ଲକ୍ଷ୍ୟ କରି ଲେଖାଯାଇଛି ଯଦିଓ ପ୍ରାରମ୍ଭରେ ବିଶ୍ୱକୁ ଲକ୍ଷ୍ୟ କରି ଲେଖାଯାଇଛି । କାରଣ ଓ ପ୍ରତିକାର ଲେଖିଥିଲେ ଭଲ ହୋଇଥାଆନ୍ତା ।

ପୂର୍ଣ୍ଣାନନ୍ଦ ରଥ, କଟକ
ତା. ୨୯.୧୦.୨୦୦୨

* ଆମେ ବିଳାସୀ ସ୍ୱାର୍ଥ ସର୍ବସ୍ୱ ଓ ବ୍ୟକ୍ତି କୈନ୍ଦ୍ରିକ ଜୀବନ ଆଡ଼କୁ ବେଶୀ ଆକୃଷ୍ଟ ହୋଇଛୁଁ । ଏହା Time-Spirit ଏଥିରୁ ସହଜେ ରକ୍ଷା ମିଳିବ ନହିଁ ।

ନେତ୍ରାନନ୍ଦ ପୂଜାରୀ, ଅବସରପ୍ରାପ୍ତ ଅଧକ୍ଷ, ବରଗଡ଼
ତା.୧୪.୬.୨୦୦୩

* 'ପଶ୍ଚିମ ଜୀବନ' ବେଶ୍ ଉପାଦେୟ-ସୁଖପାଠ୍ୟ ଲେଖା । ଅନେକଥର ପଢ଼ିଛି ଏବଂ ସାଙ୍ଗସାଥୀମାନଙ୍କୁ ପଢ଼ାଇଛି । ପ୍ରତ୍ୟେକଟି ଶବ୍ଦ, ପ୍ରତ୍ୟେକଟି ବାକ୍ୟ କଣ୍ଠସ୍ଥ କରି ଦେବାକୁ ଇଚ୍ଛା ହେଉଛି । କୌଣସି ଉଦାହରଣ ବାଦ୍ ଦେବାର ନୁହେଁ - ତେବେ ଗୋଟିଏ ଦୁଇଟିର ଉଦ୍ଧୃତି ଦେବା ଲୋଭ ସମ୍ବରଣ କରିପାରୁନାହିଁ । ଆପଣ ଲେଖିଛନ୍ତି - "ବାର୍ଦ୍ଧକ୍ୟ ମୃତ୍ୟୁର ପୂର୍ବାବସ୍ଥା । ସମାଜର ସମୀକରଣ ପାଇଁ ଜ୍ୱଳନ୍ତ ପ୍ରତୀକ ହେଉଛି - ମୃତ୍ୟୁ, କାରଣ ଶ୍ମଶାନରେ ଉଚ୍ଚନୀଚ ଭେଦଭାବ ନଥାଏ ।

ବୃଷଭାନୁ ନାଏକ, ଅବସରପ୍ରାପ୍ତ ପ୍ରଧାନ ଶିକ୍ଷକ
ମାଧମିକ ବିଦ୍ୟାଳୟ, କୁଚିଣ୍ଡା, ସମ୍ବଲପୁର
ତା.୨୬.୮.୦୩



ସାରା ଦେଶ ଯେତେବେଳେ ସ୍ୱାଧୀନତା ସଂଗ୍ରାମର ବହ୍ନିରେ ଜୁଳୁଜୁଳୁ ହୋଇ ଜଳୁଥିଲା, ମହାତ୍ମା ଗାନ୍ଧିଙ୍କ ଡାକରାରେ ଯେତେବେଳେ ଲକ୍ଷ ଲକ୍ଷ ଭାରତବାସୀ ନିଜକୁ ଦେଶପାଇଁ ଉତ୍ସର୍ଗ କରୁଥିଲେ, ଠିକ୍ ସେଇ ସମୟରେ ବାମଣ୍ଡା ଗଡ଼ଜାତର ପାରୁଆଡ଼ାଙ୍ଗି (କୁଚିଣ୍ଡା) ଗ୍ରାମରେ ୧୯୩୨ ମସିହା ଜାନୁଆରୀ ୨୧ ତାରିଖ ଦିନ ବାଳକୃଷ୍ଣ ଜନ୍ମ ଗ୍ରହଣ କରିଥିଲେ। ସେ ରାଜକୁମାର ହାଇସ୍କୁଲ (ରାଜା ବାସୁଦେବ ସୁଢ଼ଳଦେବ ହାଇସ୍କୁଲ) ରେ ପଢ଼ିବା ସମୟରେ ମାମୁଁ ଦୟାନନ୍ଦ ଶତପଥୀ ତଥା ତତ୍କାଳୀନ ଓଡ଼ିଶା ଓ ଭାରତର ବରିଷ୍ଠ ନେତୃବୃନ୍ଦଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ଗଡ଼ଜାତ ଆନ୍ଦୋଳନରେ ସକ୍ରିୟ ଅଂଶ ଗ୍ରହଣ କରିଥିଲେ। ସ୍ନାତକ ଶିକ୍ଷା ପରେ ସେ ରାଧାନାଥ ଟ୍ରେନିଂ କଲେଜରୁ ବି. ଏଡ଼. ପାସ୍ କରିଥିଲେ।

ଶିକ୍ଷା ବିଭାଗର ପ୍ରଶାସନିକ ସ୍ତରରେ ପ୍ରାଥମିକ ଓ ମାଧ୍ୟମିକ ବିଦ୍ୟାଳୟର ପରିଦର୍ଶକ ତଥା ମାଧ୍ୟମିକ ବିଦ୍ୟାଳୟର ସହକାରୀ ଓ ପ୍ରଧାନ ଶିକ୍ଷକ ରୂପେ କାର୍ଯ୍ୟକରି ସେ ଆପଣା ଦକ୍ଷତା ଓ ପାରଦର୍ଶିତା ପାଇଁ ଅନେକ ଖ୍ୟାତି ଅର୍ଜନ କରିଥିଲେ। ୧୯୯୧ ମସିହା ଜାନୁଆରୀ ୩୧ ତାରିଖ ଦିନ ସେ କର୍ମକ୍ଷେତ୍ରରୁ ଅବସର ନେଲେ।

ଅବସର କାଳୀନ ଜୀବନରେ ସେ ଶିକ୍ଷା ଓ ସମାଜର ସମସ୍ୟା ଗୁଡ଼ିକୁ ନେଇ ବିଭିନ୍ନ ସଭାସମିତି ଓ ଆଲୋଚନା ଚକ୍ରରେ ଭାଗ ନେବା ସହିତ ସାମାଜିକ ସମସ୍ୟା ସବୁକୁ ନେଇ ତାଙ୍କର ଅନେକ ଗୁଡ଼ିଏ ପ୍ରବନ୍ଧ ଓଡ଼ିଶାର ମୁଖ୍ୟ ସମ୍ବାଦପତ୍ର ଓ ପତ୍ରିକା ମାନଙ୍କରେ ପ୍ରକାଶିତ ହୋଇଛି। ଏହି ପୁସ୍ତକଟି ସେଇ ପ୍ରବନ୍ଧ ମାନଙ୍କର ଏକ ସୁନିର୍ବାଚିତ ସଂଗ୍ରହ।

ଇତିପୂର୍ବରୁ ତାଙ୍କ ଲେଖନୀରୁ ପ୍ରକାଶ ପାଇଛି ପଶ୍ଚିମ ଓଡ଼ିଶାର ଯୋଗଜନ୍ମା ମାନଙ୍କୁ ନେଇ "The Illustrious Sons of Sambalpur" ଏବଂ ତତ୍କାଳୀନ ବାମଣ୍ଡା ଗଡ଼ଜାତର ଶାସନ ଓ ସାମାଜିକ ଜୀବନକୁ ନେଇ ଆତ୍ମଜୀବନୀ ସମ୍ବଳିତ ପୁସ୍ତକ "ଖୋଲା ଝରକା"।



ISBN 81-900901-0-0